# ଜୀବନର ସ୍ମୃତି



ଲେଖିକା :

ପ୍ରିୟମ୍ବଦା ମିଶ୍ର (ସୁବାସୀ)

ପ୍ରକାଶକ ବୃନ୍ଦ :

ଡକ୍ଟର ହର ପ୍ରସନ୍ନ ମିଶ୍ର, ଦୁର୍ଗା ପ୍ରସନ୍ନ ମିଶ୍ର, ଗୌର ପ୍ରସନ୍ନ ମିଶ୍ର

# ଉତ୍ସର୍ଗ

ମୁଁ ଯେଉଁ "ଜୀବନର ସ୍ମୃତି " ବିଷୟକ ଲେଖାଟି ଲେଖିଛି ଏହା ମୋର ପିଲାଦିନରୁ ଚଉସ୍ତରି ବର୍ଷ ପର୍ଯ୍ୟନ୍ତ ଦୁଃଖ -ସୁଖର ସମାହାର । ମୋର ସ୍ୱାମୀ ସ୍ୱର୍ଗତ ପ୍ରଫେସର କାହ୍ନୁ ଚରଣ ମିଶ୍ର ଏହି ଲେଖା ପାଇଁ ମୋତେ ଯଥେଷ୍ଟ ପ୍ରେରଣା ଦେବା ସଙ୍ଗେ ସଙ୍ଗେ ପାଣ୍ଡୁଲିପିଟିର ସଂଶୋଧନରେ ତାଙ୍କର ଲେଖନୀ ଚାଳନା କରିଛନ୍ତି ; ଯାହାକି ମୁଁ ମୋ ଜୀବନରେ ଭୁଲି ପାରିବି ନାହିଁ । ତାଙ୍କର ଜଗନ୍ନାଥଙ୍କଠାରେ ଦୃଢ଼ ବିଶ୍ୱାସ ଥିଲା । ତାଙ୍କ ଦ୍ୱାରା ଲିଖିତ 'ଦି କଲ୍ଟ ଅଫ୍ ଜଗନ୍ନାଥ' ପୁସ୍ତକଟି ଦେଶ ବିଦେଶ ତଥା ଆମେରିକାରେ ବେଶ୍ ଆଦୃତ ।

ସେ ପି.ଏଚ୍.ଡି କରିଥିଲେ କଲିକତାରେ । ସରକାର ତାଙ୍କୁ ଏ ଦିଗରେ କିଛି ସାହାଯ୍ୟ କଲେ ନାହିଁ । ସେଥିପାଇଁ ସେ ବହୁତ ଅସୁବିଧା ସତ୍ତ୍ୱେ ଜଗନ୍ନାଥଙ୍କ କୃପାରୁ ପି.ଏଚ୍.ଡ଼ି ଉପାଧି ପାଇବାରେ କୃତକାର୍ଯ୍ୟ ହେଲେ ; କିନ୍ତୁ ସେ ସମୟରେ ମୁଁ ବହୁତ ଅସୁବିଧାର ସମ୍ମୁଖୀନ ହୋଇଥିଲି । ତାଙ୍କୁ ସେହି ଅସୁବିଧା କଥା କେବେ ବି କହିନି ।

ମୋର ସ୍ୱାମୀ ଥିଲେ ଜଣେ ଅମାୟିକ ବ୍ୟକ୍ତି । ପରର ଦୁଃଖ ଦେଖିଲେ ତାଙ୍କର ଅନ୍ତର କାନ୍ଦି ଉଠୁଥିଲା । ସେ ଥିଲେ ଛାତ୍ରବତ୍ସଳ ଓ ଗୁଣଗ୍ରାହୀ ।

ଓଡ଼ିଶାର ବିଭିନ୍ନ କଲେଜରେ ଅଧ୍ୟାପନା କରି ୧୯୮୧ ମସିହାରେ ବ୍ରହ୍ମପୁର ଭଞ୍ଜବିହାର ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦବୀରୁ ଅବସର ନେଇ ସେ ଭୁବନେଶ୍ୱରକୁ ଆସିଲେ । ସେ ଥିଲେ କର୍ମଚଞ୍ଚଳ, ବସିବାକୁ ତାଙ୍କୁ ଭଲ ଲାଗୁ ନଥିଲା । ସେଥିପାଇଁ ସେ ନିଜେ ଅଫିସ କରି ପ୍ରତ୍ୟେକ ବର୍ଷ ସେମିନାର କରୁଥିଲେ । ଖଣ୍ଡେ ଜାଗା ପାଇଁ ସରକାର ଏବଂ ଉଚ୍ଚ ପଦବୀରେ ଥିବା ତାଙ୍କର ଛାତ୍ରମାନଙ୍କ ପାଖକୁ ଯାଇ ବହୁତ ଅନୁନୟ ବିନୟ କରିଛନ୍ତି ; କିନ୍ତୁ କେହି ଶୁଣିଲେ ନାହିଁ । ସେଥିରେ ବହୁତ ଦୁଃଖ ତଥା ମାନସିକ ଚିନ୍ତାରେ ମ୍ରିୟମାଣ ହୋଇ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ତାଙ୍କ ମନସ୍କାମନା ପୂର୍ଣ୍ଣ ହେଲା ନାହିଁ । ମୁଁ ଭାବିଥିଲି ଆଗ ଯିବି । ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ । ଦୁର୍ଭାଗ୍ୟ ମୋର, ସେ ଆଗ ଚାଲିଗଲେ । ଜଗନ୍ନାଥ ମୋତେ ଏକା କରି ତାଙ୍କୁ ନେଇଗଲେ । ମୋର ବିଶ୍ୱାସ ସିଏ ମୋ ପାଖେ ପାଖେ ଅଛନ୍ତି । ତାଙ୍କ ସ୍ମୃତିରେ ଏହି ପୁସ୍ତକଟି ଉତ୍ସର୍ଗ କରୁଛି ।

ବିନୀତ

ସୁବ-ସୁବାସୀ

## ପ୍ରଥମ ଭାଗ

ସୁବର ଆଜି ୫୦ ବର୍ଷର ଅନୁଭୂତି ମନେପଡୁଛି। ଜୀବନରେ କେତେ ଦୁଃଖ ସୁଖ ଝଡ଼ଝଞ୍ଜାରେ ଆଗେଇ ବୁଢ଼ୀ ହୋଇଗଲା ସୁବ। ବାପଘର ଶାଶୁଘର ଜଞ୍ଜାଳରେ ୭୨ ବର୍ଷ ଡେଇଁଗଲା। ଦିନେ ଦିନେ ସେ ମୁଣ୍ଡରେ ହାତଦେଇ ଅତୀତ କଥାକୁ ମନେପକାଇ ଲୁହ ଗଡ଼ାଇପକାଏ। ସେ ଭାବେ ତା'ର ବାପା ମା ସମସ୍ତେ ଚାଲିଗଲେ ଆଖି ଆଗରେ। ଜୀବନରେ କେବେହେଲେ ବାପା, ମା'ଙ୍କ ସୁଖ ସେ ଦେଖି ନାହିଁ। ଦେଖିଛି କେବଳ ଦୁଃଖ। ବହୁତ ଦିନର ଆଶା ଏବଂ ଆକାଂକ୍ଷାରୁ ଲେଖିବାକୁ ସେ ଆଗେଇଛି। ସେହି ଜଗନ୍ନାଥଙ୍କୁ ସ୍ମରଣ କରି।

x x x x x x

ସୁବର ବାପାଙ୍କ ନାଁ ନୀଳାଦ୍ରି ନାଥ ମିଶ୍ର। ତାଙ୍କ ଜେଜେମା'ଙ୍କ ନାଁ କମଳିନୀ। ସାଧାରଣତଃ ପିଲାବେଳେ ଗପ ଶୁଣିବାକୁ ସମସ୍ତଙ୍କୁ ବହୁତ ଭଲଲାଗେ। ଜେଜେମା ଆଇବୁଢ଼ୀ ପାଖରେ ନାତିନାତୁଣୀ ବେଶି ଅଳି ଅଝଟ କରନ୍ତି। ସେହିପରି ସୁବ ପିଲାବେଳେ ଗପଶୁଣିବାକୁ ବହୁତ ଭଲପାଉଥିଲା। ସେତେବେଳେ ସୁବକୁ ମାତ୍ର ୧୦-୧୧ ବର୍ଷ। ସେ ଦୋତଲା ଉପରେ ଜେଜେମା ପାଖରେ ଶୁଏ। ତଳେ ବାପା ମା ଆଉ ଭାଇ, ଭଉଣୀ ଶୁଅନ୍ତି। କିନ୍ତୁ ତାକୁ ବାପାଙ୍କର, ଜେଜେମା ପାଖକୁ ଶୋଇବା ପାଇଁ ଛାଡ଼ିବାକୁ ଇଚ୍ଛା ନ ଥାଏ। କାରଣ ଜେଜେମା ସମସ୍ତଙ୍କ ଉପରକୁ ଚିଡ଼ିଚିଡ଼ି ହୁଅନ୍ତି ବୋଲି....ସୁବ କିନ୍ତୁ ତା'ର ବାପାଙ୍କ କଥା ନ ମାନି ଚାଲିଥାଏ ଜେଜେମା ପାଖକୁ କେବଳ ଗପ ଶୁଣିବା ନିଶାରେ।

ବ୍ରଜ ମାଷ୍ଟ୍ରେ ଘରେ ଆସି ସବୁ ପିଲାଙ୍କୁ ପଢ଼ାନ୍ତି। ନୀଳାଦ୍ରି ନାଥ ବାବୁ ଆସି ଦେଖନ୍ତି ସୁବ ନାହିଁ। ସେ ଘରେ ଆସି ଖୋଜନ୍ତି। ପଚାରନ୍ତି ସୁବ ବୋଉକୁ ସୁବ କାହିଁ....? ସେ କହନ୍ତି ଦେଖିବ ଯା' ଝିଅ ତୁମର ଘୋଡ଼େଇ ପୋଡେଇ ଶୋଇଛି। ନୀଳାଦ୍ରି ନାଥବାବୁ ବିଛଣା ଉପରୁ ଘୋଷାରି ଆଣି ମାଷ୍ଟ୍ରଙ୍କ ପାଖରେ ଝିଅକୁ ବସାନ୍ତି। ସୁବ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ

ପଢ଼ିଛି। କାରଣ ଜମିଦାରୀ ପ୍ରଥା ଅନୁସାରେ ଝିଅ ବଡ଼ ହେଲେ ବାହାରକୁ ଯିବେନି ପଢ଼ିବାକୁ। ଘରେ ରହି ସିଲେଇ ପ୍ରଭୃତି ଯାହା ପାଠ ପଢିବେ।

ସୁବର ତିନି ଭଉଣୀ ଓ ଗୋଟିଏ ଭାଇ। ବଡ ଭାଇଙ୍କ ନାଁ ହର ପ୍ରସନ୍ନ। ତା' ପରେ ତିନି ଭଉଣୀ। ତଳ ଦି' ଭଉଣୀଙ୍କ ନାଁ କୁମ-ଖିର। କିନ୍ତୁ ଦୁଇ ଭଉଣୀ ସବୁବେଳେ ବେମାର। ସେଥିପାଇଁ ବାପା ବୋଉଙ୍କର ମନଦୁଃଖ।

ଜେଜେମା ବଡ ରାଗୀ ଓ ଦୁଷ୍ଟ। ସଞ୍ଜବେଳେ ବାପା, ବୋଉଙ୍କୁ ଗାଳି ଦେବାର ସୁବ ଦେଖେ। ମନରେ ଜେଜେମା' ଉପରେ ବହୁତ ରାଗେ। ପିଲାମନ ତା'ର ଉହଳ ବିକଳ ହୋଇଯାଏ ବାପା ମା'ଙ୍କ ପାଇଁ। କିଛି କହି ପାରେ ନାହିଁ। ବାପା ମା ତା'ର ସବୁ ସହି ଯାଆନ୍ତି। ସୁବକୁ ଉପରକୁ ଛାଡ଼ିବାକୁ ନୀଳାଦ୍ରି ନାଥବାବୁ ଡରନ୍ତି। କିନ୍ତୁ ସେ ମାନେ ନାହିଁ। ରାତିରେ ଖିଆପିଆ ସରିଲେ ସୁବ ଜେଜେମା ପାଖକୁ ଲୁଚିକରି ପଳାଏ। ନୀଳାଦ୍ରି ନାଥବାବୁ ଉପରକୁ ଯାଇ ଘୋଷାରି ଆଣନ୍ତି ଝିଅକୁ ତଳେ ଶୋଇବାକୁ। ତା'ର କାରଣ ରାତି ପାହିଲା ବେଳକୁ ନୀଳାଦ୍ରି ନାଥବାବୁ ପୁଅ ଝିଅକୁ ଡାକ ପକାନ୍ତି। ସୁବ ତା ଭାଇ ନିଦ ମଳି ମଳି ଉଠିବସନ୍ତି। ତା'ର ବାପା ଇତିହାସ, ମାନସାଙ୍କ ପଚାରନ୍ତି। ଏଇଟା ତାଙ୍କର ନିତିଦିନିଆ ଅଭ୍ୟାସ। ଦିନେ ଦିନେ ସୁବକୁ ବଡ଼ ରାଗ ଲାଗେ। ସେ ତା'ର ବାପାଙ୍କୁ କହେ ସ୍କୁଲ୍‌ରେ ପାଠପଢିଲେ ଭଲ। ସପ୍ତାହକରେ ଦୁଇଦିନ ଛୁଟି। ତୁମେ ତ ଦିନଟିଏ ଛୁଟି ଦଉନା ଗପ ଟିକେ ଶୁଣିବାକୁ।

ନୀଳାଦ୍ରି ନାଥ ବାବୁ ଝିଅ କଥା ଶୁଣି ହସି ହସି ଗଡି ଯାଆନ୍ତି, କହନ୍ତି-ହଉ। ଆଜି ରାତିରେ ତୋତେ ଛୁଟି ଦେଲି ତୁ ଯାଇ ମା' ପାଖରେ ଗପ ଶୁଣିବୁ। ସୁବର ମନ ଆନନ୍ଦରେ ପୂରି ଉଠେ।

ସନ୍ଧ୍ୟାବେଳେ ଠାକୁରଘରେ ଆଳତି ଘଣ୍ଟ ବାଜୁଛି। ମା ବସିଛି ଧ୍ୟାନରେ। ସୁବ ଖୁସି ହୋଇ ଠାକୁରଘରକୁ ଦୌଡ଼ିଲା ଜେଜେମା ପାଖକୁ। କାଳେ ଛୁଇଁଦେବ ବୋଲି ଜେଜେମା ଆଡେଇ ହୋଇଯାଏ। ସେ କହେ ସୁବ କୁଆଡ଼େ ଆସିଲ? ସୁବ କହିଲା ମା ଆଜି ସେତିକି ପୂଜା କରିଥା। ଚଞ୍ଚଳ ତୋ'ର ମୋ'ର ଖାଇ ଦେଲେ ତୁ ଗପ କହିବୁ।

ଜେଜେମା'ର ସେଦିନ କ'ଣ ହୋଇଥାଏ କେଜାଣି। ଠାକୁରଘରେ ଆଖିରୁ ଲୁହ ଗଡଉଥାଏ। ପିଲା ମନ ତା'ରା ସେ କହିଲା-ମା ତତେ ମୋ ରାଣ କାହିଁକି କାନ୍ଦୁଛୁ?

କମଳିନୀ ଆଖିରୁ ଲୁହ ପୋଛି କହିଲେ କିଛି ନାହିଁ। ସୁବ କିଛି ବୁଝି ନ ପାରି ମନେ ମନେ ଭାବିଲା ଆଜି ମା'କୁ ପଚାରିବି। କ'ଣ ହୋଇଛି ତା'ର। ଖିଆପିଆ ସରିଲା। ସୁବ ଓ ତା'ର ଜେଜେମା ଗଲେ ଉପରକୁ ଶୋଇବାକୁ। ଜେଜେମା' କମଳ ଘୋଡ଼େଇ ହୋଇ ଶୋଇଗଲେ। ସୁବ ଜେଜେମା'ଙ୍କୁ କହିଲା ବୁଢ଼ୀ ଶୋଇପଡୁଛୁ କ'ଣ ? ଆଜି ରାତିରେ ମୋତେ ଗପ କହିବାକୁ ହେବ।

ସୁବ କମଳିନୀଙ୍କୁ ବୁଢ଼ୀ କହିଲେ ସେ ଭାରି ରାଗନ୍ତି। କମଳିନୀ ରାଗି କରି କହିଲେ ହଇଲୋ ସୁବ ମୁଁ ତ ବୁଢ଼ୀ। ତୁ କ'ଣ ଜୀବନରେ ବୁଢ଼ୀ ହବୁ ନାହିଁ? ସବୁଦିନେ ଟୋକୀ ହୋଇଥିବୁ। ଜେଜେମା'ର କଥାଶୁଣି ସୁବ ହସି ହସି ଗଡ଼ିଗଲା। କହିଲା– ହଉ ମୋର ଦୋଷ ହୋଇଛି ଗପ ଗୋଟେ କହ।

କମଳିନୀ– ମୋତେ କି ଗପ ଆସେ ଯେ ମୁଁ ତୋତେ କହିବି। ସୁବକୁ ବଡ ରାଗ ଲାଗିଲା। ସେ ଚିଡ଼ିଉଠି କହିଲା ତୁ କେତେ ବର୍ଷରେ ବାହା ହେଲୁ, କେମିତି ଶାଶୁ ଘରକୁ ଗଲୁ, କେମିତି ବୋହୂ ହୋଇଥିଲୁ ସେଇ ଗପ କହ।

କମଳିନୀ କାନ୍ଦି ପକେଇ କହିଲେ– ମୋ କାହାଣୀ କହିଲେ ରାମାୟଣ ପୋଥି ହେବ।

ସୁବ ଜେଜେମାଙ୍କ ମୁହଁକୁ ଆବା କାବା ହୋଇ ଚାହିଁ ରହିଥାଏ। ଜେଜେମା କେଡ଼େ ଦୁଃଖୀ ବୋଲି କହି କାନ୍ଦୁଥାଏ।

ସୁବ ମନେ ମନେ ଭାବିଲା, କ'ଣ କହିଲି ଯେ ମା' କାନ୍ଦିଲା, କିଛି ଜାଣିପାରୁ ନ ଥାଏ। ସୁବ ମା'ର ଓଠରେ ହାତ ମାରି କହିଲା– ମାଲୋ, ତୋ କାହାଣୀ ଟିକେ କହ। ସୁବ କଥା ଶୁଣି କମଳିନୀଙ୍କ ରାଗ ପଞ୍ଚମରେ ଉଠିଲା। ସେ ସୁବ ଉପରକୁ ପାଟିକରି ଉଠିଲେ। କହିଲେ ମୋତେ ଆଜି କିଛି କହନା, ମୋ ମନ ଭଲ ନାହିଁ। ମୁଁ ପଛରେ କହିବି।

ଜେଜେମାର ରାଗ ଦେଖି ସୁବ ଆସି ବାହାରେ ବସିଲା। ସେତେବେଳକୁ ରାତି ବହୁତ ହେଲାଣି। କମଳିନୀ ଶୋଇ ପାରିଲେ ନାହିଁ। ଶେଷରେ ସେ ବାଧ ହୋଇ ସୁବକୁ ବୁଝାଇ କହିଲେ– ଆ' ମୋ ମା'ଟା ପରା ଶୋଇବୁ ଆ', କେତେ ରାତି ହେଲାଣି।

ସୁବ କହିଲା– ମା' ତୁ ବାପାଙ୍କ ଲାଗି କାହିଁକି ଏତେ କାନ୍ଦିଲୁ ତତେ ମୋ ରାଣ କହ।

କମଳିନୀ ନାହିଁ କରିପାରିଲେ ନାହିଁ।

ମୋ ଦୁଃଖ କ'ଣ ଓ କାହିଁକି ଶୁଣ।

ସୁବ ଜେଜେମା ମୁହଁକୁ ଚାହିଁଥାଏ। ସେ ଗପ ଆରମ୍ଭ କଲେ।

## ଦ୍ୱିତୀୟ ଭାଗ

ମୋ ବାପଘର ନିଶ୍ଚିନ୍ତକୋଇଲି ପାଖରେ। ବାପାଙ୍କର ଚାରି ପୁଅରେ ମୁଁ ଗୋଟିଏ ଝିଅ। ବାପା ମୋର ଜମିଦାର ଘର ଓ ଖ୍ୱାଇଁ ସୁନ୍ଦର ଦେଖି ମୋତେ ବାହା କଲେ। ଶାଶୁଘରକୁ ଆସିଲାବେଳକୁ ମୋତେ ଚଉଦ ବର୍ଷ। ୧୪ ବର୍ଷ ପୂରି ୧୫ ବର୍ଷ ବେଳକୁ ମୋ ବଡ ପୁଅ ଜନ୍ମ ହୋଇ ସାରିଥାଏ। ସେତେବେଳକୁ ତୋ ଜେଜେବାପାଙ୍କୁ ୨୩ ବର୍ଷ ହୋଇଥିଲା....ଶଶୁର ଶୀଘ୍ର ମରିଗଲେ। ଏ ଦୁଇଭାଇଙ୍କ ଉପରେ ସବୁ ଦାୟିତ୍ୱ ପଡ଼ିଲା। ବଡ଼ ଭାଇ ଜମିଦାରୀ ବୁଝନ୍ତି, ସାନ ଭାଇ ବନ୍ଧୁବାନ୍ଧବ ଘରର ସବୁ ଦାୟିତ୍ୱ ସମ୍ଭାଳନ୍ତି। ଜମିଦାର ବୋଲି ଦୁଇ ଭାଇଙ୍କ ମନରେ ଗର୍ବ, ଅହଙ୍କାର ନ ଥିଲା। ମା' ବି ତାଙ୍କର ଧର୍ମପରାୟଣା ଥିଲେ। ଗାଁରେ ଗରିବ ଗୁରୁବାଙ୍କ ଦୁଃଖ ବୁଝୁଥିଲେ। ଯୋଗୀ ଭିକାରୀ କେହି ଦାଣ୍ଡ ଦୁଆରୁ ଖାଲି ପେଟରେ ଯାଉ ନ ଥିଲେ। ଗାଁ ଗଣ୍ଡାରେ ସମସ୍ତେ ଶାଶୁଙ୍କୁ ବହୁତ ଭଲ ପାଉଥିଲେ।

**ସୁବ** କହିଲା— ଆଲୋ ମା—ସେ ଦୁଇଭାଇଙ୍କ ନାଁ କ'ଣ? କମଳିନୀ ହସି ଦେଇ କହିଲେ ସକାଳୁ ସୂର୍ଯ୍ୟ କ'ଣ ହୁଅନ୍ତି? ଉଦୟ ହୁଅନ୍ତି। ତୋ ଜେଜେବାପାଙ୍କ ନାଁ ସେୟା, ସାନ ଭାଇଙ୍କ ନାଁ ଯଦୁନାଥ।

**ସୁବ** କହିଲା— ଆଲୋ ମା' ତୋ ଶଶୁର ମଲାବେଳକୁ ସାନ ଜେଜେ ବାହା ହୋଇ ସାରିଥିଲେ! ଶଶୁର ମଲା ଆଗରୁ ସାନ ପୁଅକୁ ବାହା କରି ଦେଇଥିଲେ।

ଜେଜେମାଠାରୁ ଗପ ଶୁଣି ସୁବର ନିଦ ହଜିଗଲା। ତା'ପରେ କମଳିନୀ କହିଲେ—ଶଶୁର ମରିବା ପରେ ଶାଶୁ ସବୁବେଳେ ଆଖିରୁ ଲୁହ ବୁହାଇଲେ। ତାଙ୍କ ମୁହଁରେ କେତେବେଳେ ହସ ନ ଥିଲା। ସନ୍ଧ୍ୟା ହେଲେ ଘରର ଇଷ୍ଟଦେବ ନୃସିଂହ ମହାପ୍ରଭୁଙ୍କ ପାଖରେ ନିଜର ଦୁଃଖ ଜଣାଇ କହନ୍ତି, ହେ ପ୍ରଭୁ ମୋ ପିଲାଙ୍କୁ ଦୀର୍ଘାୟୁ କର। ତାଙ୍କ ଚଲାପଥରେ କଣ୍ଟା ନ ବାଜୁ। ଜେଜେମା'ର କଥା ଶୁଣି ସୁବ ଚାତକ ପରି ଚାହିଁରହି କହିଲା— ନୃସିଂହ ମହାପ୍ରଭୁ କ'ଣ ଆମ ଘରେ ଥିଲେ ପୂର୍ବପୁରୁଷରୁ?

କମଳିନୀ— ସିଏତ ଗୋଟେ ଇତିହାସ।

ସୁବର ମନ ଚଞ୍ଚଳ ହୋଇଉଠିଲା ଶୁଣିବା ପାଇଁ। ସେ ଜେଜେମା'ଙ୍କୁ ଗେହ୍ଲା କରି କୋଳେଇନେଇ କହିଲା ଟିକେ କହ ଠାକୁରଙ୍କ କଥା।

କମଳିନୀ– ନୃସିଂହ ମହାପ୍ରଭୁ ଅଲଗା ଜାଗାରେ ଥିଲେ। ସେଠାରେ ତାଙ୍କର ପୂଜା-ନୀତି ଠିକ୍ ହେଲାନି। ମହାପ୍ରଭୁ ସ୍ୱପ୍ନକଲେ–''ମୋତେ ଏଠାରୁ ନେଇଯାଅ।'' ରାତି ରାତି ଯାଇ ସେଠାରୁ ଆଣି ଆମେ ଘରେ ସ୍ଥାପନା କଲୁ। ନୃସିଂହ ମହାପ୍ରଭୁ ପ୍ରତ୍ୟକ୍ଷ ଦେବତା। ରାତିରେ ଘରେ ବୁଲନ୍ତି, ଝୁଣୁଝୁଣୁ ଶବ୍ଦ ଶୁଭେ। ଏଥରକ ଶୁଣ୍ ମୋର ଶାଶୁଙ୍କ କଥା।

କମଳିନୀ – ସୁବ କହିଲା ହଉ କହ। ତା'ପରେ କଣ ହେଲା ? ଶାଶୁ ବୋହୂମାନଙ୍କୁ ଦେଖିଲେ ତାଙ୍କର ସ୍ୱାମୀଙ୍କ କଥା ମନେପଡେ। ତାଙ୍କର ଆଖିରେ ଲୁହ ଜକେଇ ଆସେ। ସେ ମୁଣ୍ଡରେ ହାତ ଦେଇ ବସିପଡ଼ି କହନ୍ତି-''ସିଏ ବଞ୍ଚିଥିଲେ କେତେ ଖୁସି ହଉଥାନ୍ତେ। ତାଙ୍କ ଭାଗ୍ୟରେ ନାହିଁ ପିଲାଙ୍କ ସୁଖ ଦେଖିବାକୁ'' ଏତକ କହି ସେ ନିଜକୁ ସମ୍ଭାଳି ପାରନ୍ତିନି। ବିଚଳିତ ହୋଇ ଆଖିରୁ ଝରିପଡେ ଲୁହ।

ସୁବ– ଆଲୋ ମା' ତୋ ଶାଶୁ ଏମିତି ଅଧୈର୍ଯ୍ୟ ହୋଇପଡ଼ନ୍ତି, ତେବେ ଜେଜେବାପା ସାନ ଜେଜେବାପା ବହୁତ ମନଦୁଃଖ କରୁଥିବେ।

xxxxx ହଁ ଦିନେ ଦିନେ ଦୁଇ ପୁଅ ମା'ଙ୍କୁ ବହୁତ ବୁଝାନ୍ତି। ଶାଶୁ ଜମା ବୁଝନ୍ତି ନାହିଁ। ସେ ଦୁଇ ପୁଅଙ୍କ ମୁଣ୍ଡକୁ ଆଉଁସି ଦେଇ କହନ୍ତି– ''ବାପାରେ ଯାହା ବଞ୍ଚିଛି ତୁମରି ମୁହଁକୁ ଚାହିଁ। ମୋ ପରମାୟୁ ପ୍ରଭୁ ତୁମକୁ ଦିଅନ୍ତୁ। ତୁମ ଆଗରେ ମୋ ଦିନ କଟିଯାଉ''। ଏତକ କହି ବୁଢୀ ଦୀର୍ଘ ନିଃଶ୍ୱାସ ଛାଡ଼ନ୍ତି। ଦୁଇ ପୁଅ ମା'ଙ୍କ ଦୁଃଖରେ ହତୋତ୍ସାହ ହୋଇପଡ଼ନ୍ତି। ଦୁଇ ଭାଇ ମାତୃଭକ୍ତ ଥିଲେ। ମା' ଯାହା କହିବେ, ସେମାନେ ତାହା କରିବେ। ମାଙ୍କୁ ନ ପଚାରି ସେମାନେ କିଛି କରନ୍ତିନି।

ସୁବ– ମା, ସେତେବେଳକୁ ତୋର କେତୋଟି ପିଲା ହୋଇଥିଲେ ?

କମଳିନୀ– ମୋର ସେତେବେଳକୁ ଚାରୋଟି ପିଲା।

ତୋ ଦଦେଇ କି ୫ ବର୍ଷ।

କକେଇକୁ ୪ ବର୍ଷ।

ସରକୁ ୩ ବର୍ଷ।

ନୀଳାଦ୍ରି ନାଥକୁ ୧୪ ମାସ।

– ଆଚ୍ଛା ମା' ତୋତେ କେତେବର୍ଷ ହୋଇଥିଲା ? ମୋତେ କୋଡ଼ିଏ ବର୍ଷ । ତୋ ଜେଜେବାପାଙ୍କୁ ଅଣତିରିଶ । ଆଉ ସାନ ଜେଜେଙ୍କ ପିଲାମାନେ ସବୁ ଛୋଟ ଛୋଟ । କମଳିନୀ ମନ ଦୁଃଖରେ କହିଲେ କ'ଣ ହେବ ? ଦୁଇ ଭାଇଙ୍କ ମଧ୍ୟରେ ବହୁତ ସ୍ନେହଶ୍ରଦ୍ଧା ଥିଲା । ଯଦୁ ବଡ ଭାଇଙ୍କୁ ବହୁତ ଭକ୍ତି କରୁଥିଲେ, ମାତ୍ର ଭଗବାନ ଯେତେବେଳେ ଦୁଃଖ ଦିଅନ୍ତି ତା'ର କିଛି ଅନ୍ତ ନ ଥାଏ । ସୁବ ଜେଜେମାଙ୍କୁ ହଲେଇ ଦେଇ ପଚାରିଲା–ଆଲୋ, ମା' ସମସ୍ତେ ତ ଆନନ୍ଦରେ ଥା'ନ୍ତି ପୁଣି ଦୁଃଖ କ'ଣ ?

କମଳିନୀ କାନ୍ଦି ଉଠି କହିଲେ ମୋ ଦୁଃଖ ଶତ୍ରୁକୁ ନ ଥାଉ ?

ଜେଜେମାର କାନ୍ଦ ଦେଖି ସୁବକୁ ବଡ ବ୍ୟସ୍ତ ଲାଗିଲା । ସୁବ ମା'ର ଆଖିରୁ ଲୁହ ପୋଛି କହିଲା–"ମା ଆଜି ସେତିକି ଥାଉ ତୋ କଥା ପଛେ କହିବୁ ।" କମଳିନୀ କହିଲେ–ପଛେ କ'ଣ କହିବି ଶୁଣ ।

ସୁବ– ହଉ କହ ।

ସେଇଠୁ କମଳିନୀ କହିଲେ–ବିରୂପା ନଦୀ ପାଖରେ ୩୦ରୁ ୩୫ ମାଇଲ ଦୂରରେ ଗୋଟିଏ ଜମିଦାରୀ ଥିଲା । ସେଠି ମଧ୍ୟ ତାଙ୍କର କଚିରି ଘର ଥାଏ । ମଝିରେ ମଝିରେ ତୋ ଜେଜେବାପା ସେଠି ରହୁଥିଲେ ।

ସୁବ– ମା' ତୁ କ'ଣ ତୋ ବାପ ଘରକୁ ଯାଉନା ? ସେ ରାଗିଉଠି କହିଲା–"ପୋଡ଼ିଯାଉ ସେ ବାପଘର" । ଜେଜେମା' କଥା ଶୁଣି ସୁବକୁ ଆଶ୍ଚର୍ଯ୍ୟ ଲାଗିଲା । ମନେମନେ ସେ ଭାବିଲା ମା'ର କ'ଣ ମୁଣ୍ଡ ଭଲ ନାହିଁ କି ? ସେ ଏମିତି କ'ଣ କହୁଛି ?

ସୁବ ତା' ଉପରକୁ ଚିଡିଉଠି କହିଲା–ଆଲୋ ମା' ବାପଘର ଉପରକୁ ଏମିତି କ'ଣ ହଉଛୁ ?

କମଳିନୀ ମୁହଁ ଶୁଖାଇ କହିଲେ–ମା'ଲୋ କ'ଣ କହିବି ? ତୋ ଜେଜେବାପା ଯାଇଥିଲେ କଚିରିକୁ ଜମିଦାରୀ ବୁଝିବା ପାଇଁ । ହଠାତ୍ ଦିନେ ମୋ ବାପା ଆସି ଘରେ ପହଞ୍ଚି ଶାଶୁଙ୍କୁ କହିଲେ–"ସମୁଦୁଣୀ ଝିଅ ଓ ପିଲାଙ୍କୁ ପଠାଇବ ।" ପିଲା ନାଚୁଥାନ୍ତି ମାମୁଁଘରକୁ ଯିବାପାଇଁ । ଶାଶୁ ମନାକରି ପାରିଲେ ନାହିଁ । କହିଲେ–"ସମୁଦି ତୁମେ ଝିଅକୁ ନିଅ । ମୁଁ ମନାକରୁନି । ୮-୧୦ ଦିନ ରଖି ବୋହୂ ଓ ପିଲାଙ୍କୁ ଛାଡ଼ିଦେଇ ଯିବ ।" ବାପା ହଁ ଟାଏ ମାରି ମୋତେ ଓ ପିଲାଙ୍କୁ ଗାଁକୁ ନେଇଗଲେ ।

ସୁବ କହିଲା ତୁ କେତେଦିନ ରହିଲୁ ବାପଘରେ ?

– କେତେଦିନ ଅବା ରହିବି ? ରହିବା ୭ ଦିନ ହୋଇଥାଏ ।

ସୁବ–ଜେଜେବାପା କ'ଣ କଟିଗିରେ ଥା'ନ୍ତି ? ଜେଜେମା ଆଖିରୁ ଲୁହ ଗଡ଼ାଇପକାଇ କହିଲା – ସେଇଠୁ ତୋ ଜେଜେବାପା ସବାରିରେ ପଡ଼ି ଆସିଲେ, ଆଉ ଆଖି ଫିଟାଇ ଚାହିଁ ନାହାନ୍ତି। ପ୍ରାଣ ଛାଡ଼ିଗଲା। ଜେଜେମାର କଥା ଶୁଣି ସୁବ ଦେହହାତ ଜଡ଼ ପାଲଟିଗଲା। ସେ ପଚାରିଲା ତୁ କ'ଣ କହୁଛୁ, ମୁଁ ଜାଣିପାରୁନାହିଁ। ତୁ କ'ଣ ସେତେବେଳକୁ ଗାଁକୁ ଆସି ନଥିଲୁ ?

କମଳିନୀ–କ'ଣ କହିବି ଲୋ ମା, ସେ ଦୁଃଖ। କଟିଗିରେ ଜମିବାଡ଼ି ନେଇ ଗଣ୍ଡଗୋଳ ହେଲା ପ୍ରଜାଙ୍କ ସାଙ୍ଗରେ। କ'ଣ କିଏ କରିଦେଲା କି କ'ଣ ? ଗାଁକୁ ଖବର ଆସିଲା ସାନ ଭାଇଙ୍କ ପାଖକୁ, ଚଞ୍ଚଳ ଆସ। ବଡ଼ ବାବୁଙ୍କ ଦେହ ବହୁତ ଖରାପ।

ସାନ ଭାଇ ଗଲାବେଳକୁ ଅବସ୍ଥା ଶୋଚନୀୟ। କୌଣସି ପ୍ରକାର ସବାରି ଯୋଗାଡ଼ କରି ତାଙ୍କୁ ନେଇ ଘରେ ପହଞ୍ଚିଲା ବେଳକୁ ସୂର୍ଯ୍ୟ ଅସ୍ତ ହେବା ଉପରେ। ବଡ଼ ସାଆନ୍ତଙ୍କ ଦେହ ଖରାପ ଶୁଣି ବନ୍ଧୁ ବାନ୍ଧବଙ୍କ ସମେତ ଗାଁ' ଗଣ୍ଡାର ଲୋକେ ଘରେ ଭର୍ତ୍ତି। ଘରେ କାନ୍ଦ ବୋବାଳ ପଡିଥାଏ। ସମସ୍ତେ ଧରାଧରି କରି ତାଙ୍କୁ ଦାଣ୍ଡଘର ଖଟ ଉପରେ ଶୁଆଇଦେଲେ। ଅବସ୍ଥା ଭଲ ଜଣାପଡୁ ନ ଥାଏ। ମଫସଲ ଗାଁ। ଡାକ୍ତର ପାଇବା ବଡ ଅସୁବିଧା। ଟୁଟୁକା-ମୁଟୁକା, ବଇଦ-କବିରାଜ ସବୁ କରାଗଲା। କିଛି ଭଲ ଜଣାପଡୁ ନ ଥାଏ। ସାରୁ କାଠଟି ପରି ଶାଶୁ ମୋର ପୁଅ ପାଖରେ ବସି ଆଉଁସି କାନ୍ଦୁଥାନ୍ତି। ବଡ ଭାଇଙ୍କର ଅବସ୍ଥା ଖରାପ ଦେଖି ଦିଅର ଶାଶୁଙ୍କୁ ପଚାରିଲେ–''ବୋଉ ନୂଆବୋଉଙ୍କୁ ଡକାଇ ପଠାଇବି।''

ଶାଶୁ କାନ୍ଦି କାନ୍ଦି କହିଲେ–''ହଉ ପଠା ହତଭାଗିନୀ ଟିକେ ଶେଷ ମୁହୂର୍ତ୍ତରେ ଦେଖୁ।'' ସକାଳୁ ସବାରି ପଠାଇଲେ ମୋ ବାପ ଘରକୁ। ସବାରିରେ ପହଞ୍ଚି ଡାକୁଆ ବାପାଙ୍କୁ ଖବର ଦେଲା ବଡ଼ ସାଆନ୍ତଙ୍କ ଦେହ ବହୁତ ଖରାପ। ସାଆନ୍ତାଣି ଖବର ଦେଇଛନ୍ତି। ବୋହୂ ସାଆନ୍ତାଣି ପିଲାମାନେ ଯିବେ !....

ମୋ ମା' କାନ୍ଦୁଥାଏ। ବାପା ମୋତେ ପଠାଇବାର ବନ୍ଦୋବସ୍ତ ସଙ୍ଗେ ସଙ୍ଗେ କଲେ। ନିଜେ ମଧ୍ୟ ସାଙ୍ଗରେ ଆସିଲେ। କମଳିନୀ କହୁଥା'ନ୍ତି। ମୁହଁକୁ ଝାଉଁଳେଇ ପକାଇଲା ସୁବ। ଜେଜେବାପାଙ୍କ କଥା ଶୁଣି ତା'ର ମନ କେଉଁଠି ଲାଗୁ ନଥାଏ।

–ସେହି ଦିନ ତୋ ଜେଜେବାପା ଦିନ ଦୁଇଘଡ଼ିକି ଆମ ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଦେଇ ଚାଲିଗଲେ। ସେତେବେଳେ ତୋ ଜେଜେବାପାଙ୍କୁ

ଅଣତିରିଶ ବର୍ଷ, ମୋତେ କୋଡ଼ିଏ ବର୍ଷ। ଜେଜେମାର କଥା ଶୁଣି ସୁବକୁ ବହୁତ ଖରାପ ଲାଗିଲା। ସେ ମନେ ମନେ ଭାବିଲା, ସତକଥା ମା ବଡ଼ ଦୁଃଖିନୀ।

ଜେଜେମା ଆଖିରୁ ଲୁହ ଗଡିପଡୁ ଥାଏ। ସେଇଠୁ ସେ କହିଲା– ମୁଁ ଚାରୋଟି ପିଲାଙ୍କୁ ନେଇ ବାପଘରୁ ଆସୁଛି, ବାପା ବି ମୋ ସାଙ୍ଗରେ ଆସୁଥାନ୍ତି। ମାଘମାସ ଶୀତଦିନ। ସବାରି ନାଳବନ୍ଧରେ ଆସୁଛି। ବାପାଙ୍କର ଦୃଷ୍ଟି ପଡ଼ିଗଲା ଗାଁ ତୋଟାଉପରେ। କାହାର ଚିତା ଜଳୁଛି। କେତେ ଲୋକ ମୁଣ୍ଡରେ ହାତଦେଇ ବସିଛନ୍ତି। ତାଙ୍କର ମୁଣ୍ଡଟା ଘୂରିଗଲା। ମନରେ ଅଶୁଭ ଲକ୍ଷଣ ଉଙ୍କି ମାରିଲା। ସେ ପୁଣି ମନରେ ଭାବିଲେ ଆଉ କିଏ ହୋଇଥିବ ପରା? ସବାରି ଚାଲିଛି। ତାଙ୍କୁ ଦୂରରୁ ଦେଖାଗଲା ନାଳକୂଳରେ ଅନେକ ଲୋକ ଠିଆ ହୋଇଛନ୍ତି। ସମସ୍ତଙ୍କ ମୁହଁ ଶୁଖିଯାଇଛି। ବାପା ପହଞ୍ଚି ପଚାରିଲେ– "ହଇ ହେ, ଆଜି କିଏ ଗଲାକି?" କିଏ ବା କ'ଣ କହିବେ? ସେ ଚୁପ୍ କରି ପଚାରିଲେ– "କହୁନା କିଏ ଗଲା?" ଜଣେ କହିଲା, ଆଜି ଚୌଧୁରୀ ଘର ବଡ ସାଆନ୍ତ ଚାଲିଗଲେ। ଆଉ ସେ କହିପାରିଲା ନାହିଁ। ଆଖି ତା'ର ଛଳ ଛଳ ହୋଇଗଲା। କଣ୍ଠ ତା'ର ଥରି ଉଠିଲା। କହିଲା ଆଜ୍ଞା ଦୁଃଖୀ ଲୋକଙ୍କର ସାହା ଭରସା ଚାଲିଗଲା। ସାଆନ୍ତଙ୍କ ପରି ଆମ କଥା ଆଉ କିଏ ବୁଝିବ? xxxx ମୋତେ ସବାରି ଭିତରେ ସବୁ ଶୁଭିଗଲା। ମୁଁ କି ଥୟ ଧରି ରହିପାରେ। ସବାରି ଭିତରେ ମୁଣ୍ଡକୁ ବାଡ଼େଇ ଦେଲି। ସବାରି ଦୁଆରକୁ ଖୋଲି ସେହି ଚିତାକୁ ଚାହିଁଥାଏ। ମନେ ମନେ ଭାବିଲି ଆଉ ଏ ଜୀବନ ରଖିବିନି। ବାପା ମୋତେ ମାଡ଼ି ବସିଥାନ୍ତି। ସବାରି ଭିତରେ ମୋ କାନ୍ଦ ଦେଖି ପିଲାଯାକ କାନ୍ଦି ଗଡୁଥାନ୍ତି। ପିଲାଙ୍କୁ ସମସ୍ତେ କାଖ କରି ଘରକୁ ନେଇଗଲେ। ବାପା ମନ ଦୁଃଖରେ ମୋ ପାଇଁ ଭାଙ୍ଗି ପଡ଼ିଲେ। ମୁଁ କାନ୍ଦୁଥାଏ। ସେ ମୋତେ କୌଣସି ପ୍ରକାରେ ନେଇ ଘରେ ପହଞ୍ଚିଲେ। ଶାଶୁ କାନ୍ଦି ଗଡୁଥାନ୍ତି। ମୋତେ ଆଉ ପିଲାଙ୍କୁ ଦେଖି ସେ ପାଗଳ ପରି ହୋଇଉଠିଲେ। ସେତେବେଳକୁ ଶବଦାହ କରି ମାଲ ଭାଇମାନେ ଫେରୁଥାନ୍ତି। ମୁଁ ପିଲାଙ୍କୁ ଧରି କାନ୍ଦୁଥାଏ। ଦିଅର ପାଖରେ ବସି ମୋତେ ବୁଝାଉଥାନ୍ତି। କିଛି ଚିନ୍ତା କରନି ନୂଆବୋଉ ମୁଁ ଅଛି। କ'ଣ କରିବି ଭାଇନା ମୋରି ଉପରେ ଅଜାଡି ଦେଇଗଲେ ଦାୟିତ୍ୱ। ତାଙ୍କ ଆଖିରୁ ଲୁହ ଗଡ଼ି ପଡୁଥାଏ, ଭାଇ ପାଇଁ।

xxx ଏତକ ଜେଜେମାଠାରୁ ଶୁଣି ସୁବର ଆଉ ଧୈର୍ଯ୍ୟ ରହିଲାନି। କିଛି ଶୁଣିବା ପୂର୍ବରୁ ସେ ଦୁଃଖରେ ଅଭିଭୂତ ହୋଇପଡ଼ିଲା। ସେ କହିଲା ଆଜି ସେତିକି ଥାଉ। ଆଉ ପରେ କହିବୁ। ମା ଆଉ ମୁଁ ସେଦିନ ରାତିରେ ଶୋଇପାରିଲୁନି। ଦିନଯାକ ସୁବର ମନ ନ ଥାଏ ଖାଇବାରେ କି ପିଇବାରେ। ମନେ ମନେ ସେ ଭାବେ ଜେଜେବାପା ତ ଗଲେ। ବାପା, ଦଦେଇ, ନାନୀଘରିକା ମଣିଷ ହେଲେ କିପରି? ପିଲାମନ ତ ମା'କୁ ପଚାରିବାକୁ ତାକୁ ଡର ଲାଗେ। କାଳେ ତାକୁ ପଚାରିଲେ କାନ୍ଦିବ। ଏହିପରି କିଛିଦିନ ଗଲା। ଦିନେ କମଳିନୀ ବହୁତ ରାଗିଥାନ୍ତି। ତାଙ୍କର ରାଗଟା ସ୍ୱାଭାବିକ। କିଛି କଥା ନ ଥିବ ସେ ସମସ୍ତଙ୍କ ଉପରେ ରାଗିବେ। ପୁଅ ବୋହୂ ସେଦିନ କେହି ବାଦ୍ ଯିବେନି ଗାଳିରେ। xxx ସେହିପରି ଦିନେ ଜେଜେମାର ଉଠିଲା ରାଗ। ସେ ରାଗିକରି କହିଲା– ଏ ପିଲାଙ୍କୁ ଯେତେ କଷ୍ଟରେ ମଣିଷ କରିଛି; ତାହା ଏକା ସେହି ଭଗବାନ ଜାଣନ୍ତି। ସୁବ ପାଖରେ ବସି ଶୁଣୁଥାଏ।

ସନ୍ଧ୍ୟାବେଳକୁ ସୁବ ଜେଜେମା ପାଖକୁ ଗଲା। ସେ ସେତେବେଳେ ପୂଜା ସାରି ଶୋଇଥାନ୍ତି। ସେ ପାଖରେ ବସି ଗୋଡ଼ ମୋଡ଼ି ବସିଲା ଜେଜେମାର। ସେ ସୁବକୁ ଚାହିଁ କହିଲେ କିଲୋ କୁଆଡେ ଆସିଲୁ? ସୁବ କହିଲା ଆଲୋ ମା ଗପଟା କହିଲୁ ଅଧାଖଣ୍ଡିଆ। ମା' ମୋ ଉପରକୁ ଚିଡ଼ିଉଠି କହିଲା ଗପଟା ତ ସବୁ କହିଲି ସେଦିନ। ଅଧା ରହିଲା କେଉଁଠି?

ସୁବ– ସତ କହିଲୁ ସବୁ କହିଛୁ?

– କେଜାଣି ମୋର ମନେପଡୁନି କେତେ କହିଛି।

ସୁବ– କିଲୋ ତୁ ପରା ଜେଜେବାପା ମରିବା ପର୍ଯ୍ୟନ୍ତ କହିଛୁ।

ବାପା ଦଦେଇ ମଣିଷ ହେଲେ କେମିତି? ଦୁଇ ନାନୀ ବାହା ହେଲେ କେମିତି? ସେସବୁ କିଛି କହିନୁ। ତୁ ପରା କହିଲୁ ପଛେ କହିବୁ। ଅତି ମନ ଦୁଃଖରେ ସୁବ କହିଲା ଜେଜେବାପା ଜେଜେମା ମଲା ପରେ ତତେ ପିଲାମାନଙ୍କୁ ଚଳେଇବାକୁ ବହୁତ କଷ୍ଟ ହୋଇଥିବ।

କମଳିନୀ–କଷ୍ଟ ନୁହେଁ ତ ଆଉ କ'ଣ? କିନ୍ତୁ ବାପା ମଲାପରେ କକେଇଙ୍କ ସ୍ନେହ ଶ୍ରଦ୍ଧାରେ ପିଲା ବଢ଼ିବାକୁ ଲାଗିଲେ xxx ବଡ଼ ଭାଇ ଗଲାପରେ ସବୁ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା। ଭାଇ ମଲାପରେ ତାଙ୍କ ମୁହଁରେ କେତେବେଳେ ହସ ନ ଥାଏ। ସର୍ବଦା ଚିନ୍ତାଗ୍ରସ୍ତ। ପ୍ରଭୁ ଯାହାକୁ

ଦୁଃଖ ଦିଅନ୍ତି ଦୁଃଖର ସୀମା ରହେନାହିଁ। ଦୁଇ ତିନିବର୍ଷ ପରେ ଯା' ମୋର ଚାଲିଗଲା ୫ଟା ପିଲାଙ୍କୁ ଶୋକ ସାଗରରେ ଭସାଇ ଦେଇ। ସ୍ତ୍ରୀ ମଲାପରେ ଦିଅର ଦୁଃଖରେ ଭାଙ୍ଗିପଡ଼ିଲେ। କିନ୍ତୁ ଶାଶୁ ଏସବୁ ଦେଖି ପଥର ପାଲଟିଗଲେ।

xxxx ପିଲାଙ୍କର ପଢ଼ିବା ବୟସ ହେଲା। ସ୍କୁଲ୍‌କୁ କକେଇ ପଠେଇଲେ ପଢିବାକୁ।

ସୁବ– ତା' ହେଲେ ସାନ ଜେଜେ ସବୁ ବୁଝୁଥିଲେ।

କମଳିନୀ– ସେ ସବୁ ବୁଝିଲେ ମଧ କାଳେ ପିଲାଙ୍କର କ'ଣ ଅସୁବିଧା ହେବ ସେଥିପାଇଁ ଦିଅରଙ୍କୁ ଲୁଚାଇ ମୁଁ ଛେଳି ବେପାର କରୁଥିଲି।

ସୁବ– ସାନ ଜେଜେ ତ ସବୁ ବୁଝନ୍ତି, ତୁ କାହିଁକି ଏତେ କଷ୍ଟ କରୁଥିଲୁ ?

ଜେଜେମା କହିଲା– କ'ଣ କରିବି ? ମନ ବୁଝେ ନାହିଁ ପିଲାଙ୍କ ଲାଗି। ଜମିଦାରୀ କଥା ? ପଇସାପତ୍ର କାହାକୁ ମାଗିବି ବାପା ମା'ଙ୍କର ଗୋଟିଏ ଝିଅ। ବେଶି ଗେହ୍ଲା ହୋଇଥିଲି ବୋଲି କମ୍ ବୟସରେ ଏତେ ଦୁଃଖ ପାଇଲି। ଶୁଣ ତା'ପରେ କ'ଣ ହେଲା ?

ସୁବ– ଆଚ୍ଛା କହ।

ଦିଅର ପୁଅ ପୁତୁରାଙ୍କର ବ୍ରତକର୍ମାଦି କରାଇଲେ। ତାଙ୍କ ଉପରେ ଦିନକୁ ଦିନ ଜଞ୍ଜାଳ ବଢିବାକୁ ଲାଗିଲା। ଝିଅ ଝିଆରୀ ସମସ୍ତଙ୍କ ବିବାହ ବୟସ ହୋଇଗଲା। କିପରି ସମସ୍ତଙ୍କୁ ଭଲ ଘର ଭଲ ବର ଦେଖି ବିଭା ଦେବେ ସେଥିପାଇଁ ସେ ବ୍ୟସ୍ତ ହୋଇପଡ଼ିଲେ। ସେହିପରି ସମସ୍ତଙ୍କୁ ବହୁତ ବଡ଼ଲୋକ ସମ୍ପତ୍ତିବାଲା ଘରେ ଦେଖି ବିବାହ ଦେଲେ। କେବଳ ମୋ ସରଟିକି ଜୋଇଁ ସୁନ୍ଦର ଦେଖି ବାହା ଦେଲେ। ସମ୍ପତ୍ତି ବାଡ଼ି କିଛି ନ ଥିଲା। ସେଥିପାଇଁ ମୋ ମନରେ ଟିକେ ଦୁଃଖ ଥାଏ। କିନ୍ତୁ ଝିଆରୀ କାଳେ ମନଦୁଃଖ କରି ହଇରାଣ ହେବ ବୋଲି ଖୁଡୁତା ସବୁ ଜିନିଷ ତା ପାଖକୁ ପଠାଉଥିଲେ। ପିଲାଙ୍କୁ ବାପର ଅଭାବ ଜାଣିବାକୁ ଦଉ ନ ଥିଲେ।

ସୁବ– ମା ଲୋ ! ସାନ ଜେଜେ ଏତେ ବୟସରେ ଜମିବାଡ଼ି ଘରଦ୍ୱାର ଜଞ୍ଜାଳ କିପରି ବୁଝୁଥିଲେ ?

– ଆଗ ଆଗ ଯାହା ବୁଝୁଥିଲେ। ପଛକୁ ପଛକୁ ମାନସିକ ଓ ଶାରୀରିକ ଚିନ୍ତାରେ ବୁଝାବୁଝି କରିବାକୁ କଷ୍ଟ ହେଲା। ଦିନେ ସେ ବଡ ପୁତୁରାକୁ ଡାକି କହିଲେ–"ମୁଁ ଆଉ ପାରିବି ନାହିଁ। ଏଥରକ ତୁ ଜମିବାଡ଼ି ଦେଖାଶୁଣା କର।"

କକେଇ କହିଲାରୁ ମୋ ବଡ ପୁଅ ଜମିବାଡି ଦେଖାଶୁଣା କଲା। ଦିଅର ମଧ୍ୟ କେମିତି କ'ଣ ହେବ ବୁଝାଇ ଦେଉଥିଲେ। ଗୁମାସ୍ତା ଘରେ ଥାଏ। କଟିରିକି ତାକୁ ସାଙ୍ଗରେ ପଠଉଥିଲେ।

ସୁବ— ବାପା, ଦଦେଇ, କକେଇ କ'ଣ ପାଠ ପଢୁ ନ ଥିଲେ।

କମଳିନୀ କହିଲେ—ଖୁଡୁତା ଯେତେ ଚେଷ୍ଟା କଲେ, କିଏ ସେପରି ପଢ଼ିଲେ ?

ସୁବ— ବାପା ?

—ତୋ ବାପା ଯଦି ସ୍କୁଲକୁ ଯିବ କାହା ଚାଳରୁ ନଡ଼ା ଘୋଷାରି ଗାଈ ଆଗରେ ପକାଇବ। ଆଜି ୟା ଚାଳରୁ ନଡ଼ା ତ କାଲି ତା ଚାଳରୁ ନଡ଼ା ଟାଣି ଆଣିବ। ଗରିବ ଲୋକ କେତେ ସହିବେ। ରାତି ପାହିଲେ ତୋ ବାପା ନାଁରେ ଆସିବ ଫେରାଦ୍। ଖୁଡୁତା ତୋ ବାପାଙ୍କୁ ଘୋଷାରି ଆଣି ବାଡ଼େଇବେ। ମୁଁ ସବୁ ଦେଖେ କିଛି କହେ ନାହିଁ ସିନା, ମୋ ଆଖିରୁ ଗଡ଼ିପଡ଼େ ଲୁହ। ମନକୁ ମନ କହେ—

"ନୀଳଟି ଆମର ଜନମଦୁଃଖୀ
ପିଲାଟି ଦିନରୁ ବାପ ନ ଦେଖି।"

ସତେ ବାପ ଛେଉଣ୍ଡକୁ ନୃସିଂହ ମହାପ୍ରଭୁ ମଣିଷ କରିବେ ? ସେହି ପିଲାଙ୍କ ଲାଗି ଆଖି ଲୁହ ଆଖିରେ ମାରି ଚଳେ। ସେଇ ଗାଈଙ୍କ ଲାଗି ତୋ ବାପା ପାଠ ଛାଡ଼ିଲା।

ସୁବ ଜେଜେମା' କଥାକୁସବୁ ଶୁଣୁଥାଏ। ସେ କହିଲା ଆଲୋ ମା-ତା' ପରେ କ'ଣ ହେଲା ?

କମଳିନୀ— କ'ଣ ହେବ। ପୁଅ ପୁତୁରାଙ୍କୁ ଭଲ ଜାଗା ଦେଖି ଦିଅର ଦୁଇ ତିନି ବର୍ଷ ଭିତରେ ବିବାହ କର୍ମାଦି ସାରିଲେ। ତିନି ବୋହୂଯାକ ବହୁତ ସୁନ୍ଦରୀ। ଦିଅର ବୋହୂଯାକଙ୍କୁ ଦେଖି ହସି ହସି କହନ୍ତି—"ମୁଁ କରିଛି ବୋହୂ ସଂସାର ଦେଖିଲି। ସେମାନେ କରିବେ ବୋହୂ ସଂସାର ଦେଖିବ। ପୁଅ ପୁତୁରା ଅଲଗା ଏକଥା ତାଙ୍କ ମନରେ ନ ଥାଏ। କ୍ରମେ କ୍ରମେ ସେ ଆଉ ବାହାରକୁ ଯିବା ଆସିବା କରି ପାରିଲେ ନାହିଁ। ଯେତେ କଷ୍ଟ କରି ପିଲାଙ୍କୁ ମଣିଷ କରିଛି ପ୍ରଭୁ ଜାଣନ୍ତି। ସେହି ଏକା ତାଙ୍କୁ ଭରସା। ଏତକ କହି ଜେଜେମା କଇଁ କଇଁ ହୋଇ କାନ୍ଦି ପକାଇଲା।

କମଳିନୀ କହିଲେ—ତା'ପରେ—ତୋ ବୋଉର ଯେତେବେଳେ ବଡ ପୁଅ ହେଲା ତିନି ଦିନ କାଳ ଝାଡା ପରିସ୍ରା ହେଲାନି, ଘରେ କାନ୍ଦ ବୋବାଳି ପଡ଼ିଗଲା। ତ୍ରିବେଣୀଶ୍ୱର ମହାଦେବଙ୍କୁ ଡାକି ମାନସିକ କଲାରୁ ପୁଅ ବଞ୍ଚିଲା। ଏ ପୁଅକୁ ଦେଢ଼ବର୍ଷ ହୋଇଥିଲା, ଆଉ ଗୋଟିଏ ପୁଅ ହେଲା। ସେ ପୁଅ ତିନିଦିନର ହୋଇଥିଲା ମରିଗଲା। ତା' ପରେ ପରେ ତୋ ବୋଉର ଦେହ ଏପରି ଖରାପ ହେଲା ଯେ ସମସ୍ତେ ଆଶା ଛାଡି ଦେଇ ବସିଲେ। କହିଲେ, ସେ ଆଉ ବଞ୍ଚିବ ନାହିଁ। ଖୁଡୁତା କଟକରୁ ବଡ ଡାକ୍ତର ଡକେଇ ଆଣିଲେ। ସେ ବହୁତ ଚେଷ୍ଟା କଲେ। ମାତ୍ର କିଛି ଫଳ ହେଲା ନାହିଁ। କ'ଣ କରିବୁ ଆମକୁ କିଛି ବୁଦ୍ଧି ଦେଖାଯାଉ ନ ଥାଏ। ମାତ୍ର ଗାଁରୁ ୧୦-୧୫ ମାଇଲ ହବ ଭାରପଡ଼ାରେ ଗୋଟିଏ ପ୍ରସିଦ୍ଧ କବିରାଜ ଥିଲେ। ତାଙ୍କୁ ଡକା ହେଲା। ତାଙ୍କରି ଚିକିତ୍ସାରେ ତୋ ବୋଉର ଦେହ ଭଲ ଆଡକୁ ଆସିଲା....ଜେଜେମାର କଥା ଶୁଣି ସୁବ କହିଲା—ଦୁଇଜଣଙ୍କ ବେଳକୁ ଏତେ ଅସୁବିଧା। ମୋ ବେଳକୁ କେତେ ଅସୁବିଧା ହୋଇ ନଥିବ। ମା' ମୁଣ୍ଡରେ ହାତ ଦେଇ କହିଲା—ତୁ ପରା ପୋଖରୀ ଭିତରେ ଜନ୍ମ ହୋଇଥାନ୍ତୁ। ଭାଗ୍ୟ ଭଲ ତତେ ଷଠିଦୁଣୀ ବଞ୍ଚେଇ ଦେଲେ। ପୁଣି ତତେ ୪/୫ ବର୍ଷ ହୋଇଥିଲା ଖେଳୁ ଖେଳୁ ତୁ ମୂର୍ଚ୍ଛା ହୋଇଯାଉ। କେତେ ଡାକ୍ତର କବିରାଜ ଗୁଣିଗାରଡି କଲୁ, କେଉଁଥିରେ ଭଲ ହେଲାନି। ଶେଷରେ ତୋ ମାମୁଁଘର ତୁମକୁ ଆସି ନେଇଗଲେ। ସେଇଠି କିଏ କହିଲା ସୁନାର ବସୁଣି ତତେଇ ମୁଣ୍ଡରେ ଚିହ୍ନା ମାରିଦିଅ। ଭଲ ହୋଇଯିବ। ତୋ ଆଈ ସେୟା କଲାରୁ ତୁ ଭଲ ହେଲୁ।

ଜେଜେମାର କଥାଶୁଣି ସୁବ ଭାବିଲା ମୋ ପାଇଁ ପୁଣି ଏତେ କଷ୍ଟ।

...ତା'ର ବୋଉ କହିବା କଥା ମନେପଡ଼ିଲା। ସାନ ଜେଜେବାପା ଆମକୁ ସବୁ ବହୁତ ଭଲ ପାଆନ୍ତି। ନିଜେ ଖାଇ ବସିଲାବେଳେ ସବୁ ନାତିନାତୁଣୀଙ୍କୁ ସାଙ୍ଗରେ ବସାଇ ନ ଖାଇଲେ ସେ ଖାଆନ୍ତି ନାହିଁ। ସୁବର ଟିକେ ଟିକେ ମନେପଡେ ତାଙ୍କର ମରିବା କଥା।

x x x x x x x x

ପୁରୀ ପାଖରେ ଗୋଟେ ଜମିଦାରୀ ଥାଏ। ଦଦେଇ ସେଠାକୁ ଯାଇଥା'ନ୍ତି ଜମିଦାରୀ ବୁଝିବାପାଇଁ। କାର୍ତ୍ତିକ ପୂର୍ଣ୍ଣିମା ତିନି ଚାରି ଦିନ ଥିଲା। ସାନ ଜେଜେବାପାଙ୍କ ଦେହ ହଠାତ୍ ବହୁତ ଖରାପ ହେଲା। କଟକରୁ ଡାକ୍ତର ଡକା ହେଲା। ସବୁ ଔଷଧ ପତ୍ର ଦିଆହେଲା; କିନ୍ତୁ ଦିନକୁ ଦିନ ଦେହ

ଖରାପ ଆଡ଼କୁ ଗତି କଲା । ଝିଅ, ଝିଆରୀ ସମସ୍ତେ ଆସି ଥା'ନ୍ତି ଦେଖିବାକୁ । କାର୍ତ୍ତିକ ପୂର୍ଣ୍ଣିମା ଦିନ ଅନ୍ଧାରୁ ସମସ୍ତେ ଡଙ୍ଗା ଭସାଇବାକୁ ବାହାରିଛନ୍ତି । ସେତିକି ବେଳକୁ ସାନ ଜେଜେ ଶେଷ ନିଶ୍ୱାସ ତ୍ୟାଗ କଲେ । ଘରେ ସମସ୍ତେ କାନ୍ଦି ଉଡ଼ି ଛାଡୁଥାନ୍ତି । ଆମେ ନାତି ନାତୁଣୀ ସମସ୍ତେ କାନ୍ଦୁଥାଉ । ସମସ୍ତଙ୍କ କାନ୍ଦ ଦେଖି ।....ଆମ ଘରକୁ ଲାଗି ଆଉ ଜଣେ ଜେଜେବାପାଙ୍କ ଘର ଥାଏ । ଆମକୁ ସବୁ ସେଠିକି ନେଇଗଲେ । ତା' ପରେ ଶବ ସତ୍କାର ହେଲା ।......

ଦଦେଇଙ୍କ ପାଖକୁ ଆଗରୁ ଖବର ଯାଇଥାଏ । ସେ ଖବର ପାଇ ଘରକୁ ଆସିଲାବେଳକୁ ସବୁ କାମ ଶେଷ ହୋଇସାରିଥିଲା ।....କକେଇଙ୍କୁ ଦେଖି ନ ପାରି ଦଦେଇ ବହୁତ କାନ୍ଦିଲେ ଓ କହିଲେ ପିଲାଟି ଦିନରୁ ବାପ କ'ଣ ଜାଣି ନାହୁଁ । କକେଇଙ୍କ ସ୍ନେହ ଶ୍ରଦ୍ଧାରେ ବଢ଼ିଲୁ । ହତଭାଗା ମୁଁ ଶେଷ ସମୟରେ ଦେଖିପାରିଲି ନାହିଁ । ଭଲରେ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ ହେଲା ।

ଦିଅର ମରିବା ପରେ କମଳିନୀ ବହୁତ ଅଧୈର୍ଯ୍ୟ ହୋଇପଡିଲେ । ଘରର ସବୁ ଜଞ୍ଜାଳ ତାଙ୍କ ଉପରେ ଅଜାଡ଼ି ହୋଇପଡ଼ିଲା । ବଡ଼ ପୁଅକୁ ତାଙ୍କର ସବୁ ଜମିବାଡ଼ି ଦାୟିତ୍ୱ ସମ୍ଭାଳିବାକୁ ହେଲା । xxxx ସୁବ ମନେ ମନେ ଭାବିଲା ଜେଜେମାର ଶାଶୁ କଥା । ସିଏ ବଞ୍ଚି ଥାଉ ଥାଉ ଦୁଇ ପୁଅ ଆଖି ଆଗରେ ଚାଲିଗଲେ, ବୁଢୀ ସେ ଚିନ୍ତାରେ କଣ ହେଉ ନ ଥିବ ।

ସୁବ ଦିନେ କହିଲା । ଜେଜେମା'କୁ । ତୋ ଶାଶୁ ମଧ୍ୟ ତୋରି ପରି ଦୁଃଖୀ । ପୁଅ ମଲାପରେ ସେମାନଙ୍କୁ ଝୁରି ଝୁରି ସବୁବେଳେ ଆଖିରୁ ଲୁହ ଗଡ଼ାଇ ବର୍ଷକ ପରମାୟୁ ୬ ମାସରେ ସାରିଲେ ।

ଜେଜେମାଠାରୁ ସବୁକଥା ଶୁଣି ସୁବର ମନ ବହୁତ ଖରାପ ହେଲା । ସେ ମନେ ମନେ ଭାବିଲା ଜେଜେମା ଯାହା କହୁଥିଲା ସତ । ଏତ ଗୋଟାଏ ରାମାୟଣ ପୋଥି !

## ତୃତୀୟ ଭାଗ

ସୁବ–ଆଜି ମୁଁ ଯାହା ଜେଜେମାଠାରୁ ଶୁଣିଛି, ଯାହା ଦେଖିଛି ଏବଂ ଯାହା ଅଙ୍ଗେ ନିଭାଇଛି । ତାହାର କିୟଦଂଶ ଉଲ୍ଲେଖ କରୁଛି ।

ବିରୂପା ନଈ କୂଳରେ ଅବସ୍ଥିତ ଗୋଟିଏ ଗାଁ । ତା ଚାରିପଟେ ଦେବାଦେବୀ ମନ୍ଦିର । ବିରୂପା ନଦୀର ଆଗକୁ ଛତିଆବଟ । ଛତିଆବଟର କୀର୍ତ୍ତି ଅତୁଳନୀୟ ।

ପୁରୀ ମନ୍ଦିରରେ ଯେପରି ଜଗନ୍ନାଥଙ୍କର ଆବିର୍ଭାବ, ସେଠାରେ ମଧ୍ୟ ସେହିପରି। ତା'ର କିଛି ଦୂରରେ ଜଳୌକା ପାହାଡ। ଆଗକୁ ଗଲେ ଚଣ୍ଡିଖୋଲ ଝରଣା। ତା ପାଖକୁ ମହାବିନାୟକ ପୀଠ। ଏହି ପୀଠରେ ବୃହତ୍ ଗଣେଶ ମୂର୍ତ୍ତି ପୂଜିତ ହୁଅନ୍ତି। ପ୍ରକାଶ ଥାଉକି ଓଡିଶାରେ ପଞ୍ଚ ଦେବତାର ଉପାସନା ବହୁ ଦିନଧରି ପ୍ରଚଳିତ ହୋଇଆସୁଛି।

"ନାରାୟଣ ଗଣରୁଦ୍ରେ
ଅମ୍ବିକା ଭାସ୍କର ତଥା"

– ଏହି ପଞ୍ଚ ଦେବତାଙ୍କୁ ନେଇ ଓଡ଼ିଶାରେ ପାଞ୍ଚଟି ପୀଠ ପରିକଳ୍ପିତ। ଏହା ଓଡ଼ିଶାର ଜାତୀୟ ଜୀବନ ଖାଲି ନୁହେଁ, ବରଂ ଏହା ତା'ର ଧର୍ମକୁ ଓ ସାଂସ୍କୃତିକ ଜୀବନକୁ ପରିପୁଷ୍ଟ କରୁଅଛି। ପଞ୍ଚାଉପାସନାର ନିଦର୍ଶନ ଥିବାରୁ ଓଡ଼ିଶା ସର୍ବଧର୍ମ, ସର୍ବ ଉପାସନା ପୀଠ ତଥା ସର୍ବ ମତବାଦର ସମନ୍ୱୟର ବୋଲି ପୁରାଣରେ ଉଲ୍ଲେଖ କରାଯାଇଛି। ପବିତ୍ର ପୀଠ ଶ୍ରୀକ୍ଷେତ୍ରରେ ନାରାୟଣ, ଚନ୍ଦ୍ରଭାଗାସ୍ଥ କୋଣାର୍କରେ ସୂର୍ଯ୍ୟ, ଭୁବନେଶ୍ୱରରେ ଶିବ ବା ରୁଦ୍ର, ଯାଜପୁରରେ–ବିରଜା ଏବଂ ମହାବିନାୟକରେ ଗଣେଶ। ଏହିପରି ହିନ୍ଦୁଜାତିର ପୁରାଣ ପ୍ରସିଦ୍ଧ ପାଞ୍ଚୋଟି ଦେବତାଙ୍କ ନିର୍ଦ୍ଦିଷ୍ଟ ପାଞ୍ଚଗୋଟି ପୀଠର ପରିକଳ୍ପନା।....ଭାରତର ଆଉ କୌଣସି ସ୍ଥାନରେ ଏପରି ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ। ଓଡ଼ିଶା ଧର୍ମର ଦେଶ ଏବଂ ଜଗନ୍ନାଥ ସେ ଦେଶର ପ୍ରାଣପୁରୁଷ। ଜଗନ୍ନାଥ କ୍ଷେତ୍ରର ପବିତ୍ରତା ତଥା ଉଦାରତା ପ୍ରତିଷ୍ଠା ପାଇଁ ଭାରତର ସର୍ବ ଶ୍ରେଣୀର ଭକ୍ତ ଓ ଉପାସକମାନଙ୍କ ପାଇଁ ଜଗନ୍ନାଥ ସ୍ୱୟଂ ବିବିଧ ଯାତ୍ରା ଓ ପର୍ବପର୍ବାଣିରେ, ଏହି ପଞ୍ଚ ଦେବତାର ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତି। ଏହାଠାରୁ ଆଉ ବଡ଼ କଥା କ'ଣ ହୋଇପାରେ ?....

.....ବିରୂପା ନଦୀ କୂଳରେ ଗାଁଟିଏ। ବଡ ନ ହେଲେ ମଧ ଛୋଟ ଗାଁ ନୁହେଁ। ସେଥିରେ ବ୍ରାହ୍ମଣ ଘର ୫୦ ହେବ। ଆଉ ବାଉରୀ, କଣ୍ଡରା ଅଲଗା ଜାତି ମିଶି ଅନେକ। ଆଗକୁ ତ୍ରିବେଣୀଶ୍ୱର ମହାଦେବ। ସେ ଗାଁରେ ଜମିଦାର ଘର ପ୍ରତିଷ୍ଠିତ। ପୂର୍ବପୁରୁଷରୁ ତାଙ୍କରି ନାଁ ଚୌଧୁରୀଘର। ତେଣୁ ସେହି ଅନୁସାରେ ବଂଶର ମର୍ଯ୍ୟାଦା ରହି ଆସିଛି। ଗାଁ'ଟିରେ ବାରମାସରେ ତେର ପର୍ବ। ତା ଭିତରେ ଜମିଦାରଙ୍କର ଭାଦ୍ରବ ମାସରେ ସୁନିଆ ଏବଂ ଇନ୍ଦୁ ପୂର୍ଣ୍ଣିମା। ଆଶ୍ୱିନ ମାସରେ ଦଶହରା। ଫଗୁଣ ମାସରେ ଦୋଳପର୍ବ। ସୁନିଆଁରେ ପ୍ରଜାମାନେ ଜମିଦାରଙ୍କୁ ଭେଟି ଦିଅନ୍ତି ବିଭିନ୍ନ ଜିନିଷ। ଦାଣ୍ଡରେ

ବାଜେ ବାଜା । ଘରେ ସମସ୍ତେ ପିନ୍ଧନ୍ତି ନୂଆ ଲୁଗା - ଖାଆନ୍ତି ନୂଆ ଚାଉଳ । ଭାଦ୍ରବ ପୂର୍ଣ୍ଣିମାକୁ ଇନ୍ଦୁ ପୂର୍ଣ୍ଣିମା କହନ୍ତି । ସେଦିନ ଭାଗବତ ଗାଦି ପୂଜା ପାଆନ୍ତି । ଦାଣ୍ଡରେ ବ୍ରାହ୍ମଣମାନେ ଭାଗବତ ବୋଲନ୍ତି ଏବଂ ଖିଆପିଆ ହୁଏ । ଫଗୁଣ ମାସରେ ଦୋଳପର୍ବ । ସେହିପରି ଫଗୁଣ ମାସରେ ଦୋଳଯାତ୍ରା ପ୍ରସିଦ୍ଧ । ଫଗୁଣ ଦଶମୀଠାରୁ ଆରମ୍ଭ ହୁଏ ଏହି ଯାତ୍ରା । ଶେଷ ହୁଏ ପୂର୍ଣ୍ଣିମାରେ ନୃସିଂହ ମହାପ୍ରଭୁଙ୍କୁ ଦଶମୀଦିନ । ସନ୍ଧ୍ୟାବେଳକୁ ଜମିଦାରଙ୍କ ବଡ ଅଂଶ ଏବଂ ଠାକୁରଙ୍କ ସେବାକାରୀ (ପୂଝାରୀ) ଠାକୁରଙ୍କୁ ଧରି ପହଣ୍ଡି କରି ଦୋଳମଣ୍ଡପକୁ ଆଣନ୍ତି ।

ମଣ୍ଡପରେ ବିମାନ ଆଗରୁ ସଜବାଜ ହୋଇରହିଥାଏ । ଠାକୁର ବାହାରିଲା ବେଳକୁ ସେ ସ୍ଥାନ ଘଣ୍ଟ ସଂକୀର୍ତ୍ତନରେ ମୁଖରିତ ହୋଇଥାଏ । ସେହି ମଣ୍ଡପ ଚାରିପଟ ଠାକୁରଙ୍କୁ ତିନିଘେରା ବୁଲାଇ ବିମାନ ଭିତରେ ବସାନ୍ତି । ତା' ପରେ ବହୁତ ପ୍ରକାର ଭୋଗ ବାରମ୍ବାର ପୂଜା ହୁଏ । ସେଦିନ ବହୁତ ଲୋକ ଖିଆପିଆ କରନ୍ତି । ବନ୍ଧୁବାନ୍ଧବ, ଚାକର ଘରଲୋକ ସମସ୍ତେ ନୂଆ ଲୁଗା ପିନ୍ଧନ୍ତି । ଖିଆପିଆ ପରେ ଦାଣ୍ଡରେ ଗୋଟିପୁଅ ନାଚ ଏବଂ ଯାତରା ହୁଏ । ଯାତରା ସରିଲେ ଗୋପାଳମାନେ ଠାକୁରଙ୍କ ବିମାନ କାନ୍ଧେଇ ମଣ୍ଡପ ଉପରୁ ବାହାର କରନ୍ତି ଠାକୁରଙ୍କୁ ମେଲଣକୁ ନବା ପାଇଁ । ଯାତ୍ରା ସରିଲେ ଯେଉଁ ଜମିଦାରଙ୍କର ଠାକୁରଙ୍କ ପାଖରେ ଭୋଗ ପୂଜା ହୋଇଥିବ, ତାଙ୍କରି ଦୁଆର ମୁହଁକୁ ଆଗ ଗୋପାଳମାନେ ବିମାନକୁ ନିଅନ୍ତି । ସେଠି ତାଙ୍କ ଘରର ବୋହୂ ଠାକୁରଙ୍କୁ ବନ୍ଦାପନା କରିସାରିଲାପରେ ଠାକୁର ଏକାଦଶୀ ଦିନ ଛତିଆ ମେଲଣକୁ ଯାଆନ୍ତି । ଦ୍ୱାଦଶୀ ଦିନ ଓଡାସିଂହ ମେଲଣ । ତ୍ରୟୋଦଶୀ ଦିନ ଗୋବିନ୍ଦପୁର ମେଲଣ ।

ଚତୁର୍ଦ୍ଦଶୀ ଦିନ ମଞ୍ଜେଶ୍ୱର ମେଲଣରୁ ଠାକୁରେ ମେଣ୍ଢାଘର ପୋଡି ଝୁଲଣ ମଣ୍ଡପକୁ ଫେରି ସେଠାରେ ରହନ୍ତି । ପୂର୍ଣ୍ଣିମା ଦିନ—ରାତିରେ ଗାଁ ମେଲଣ ହୁଏ । ବହୁ ଆଡ଼ମ୍ବରରେ ଭୋଗରାଗ ପୂଜା ହୁଏ ।

ପୂର୍ଣ୍ଣିମା ଦିନ ଜମିଦାରଙ୍କର ଦାଣ୍ଡରେ ହୁଏ ମେଲଣ । ସେଦିନ ଜମିଦାରଙ୍କର ପୁଅ, ପୁତୁରା, ଘରଲୋକେ ଠାକୁରଙ୍କୁ କାନ୍ଧେଇ ଝୁଲଣ ମଣ୍ଡପରୁ ଆଣି ଦାଣ୍ଡରେ ବନ୍ଦାପନା କରି ମଣ୍ଡପ ଉପରକୁ ବିମାନକୁ ନିଅନ୍ତି । ସେଠାରେ ଭୋଗରାଗ, ଖିଆପିଆ ଓ ଯାତରା ସରୁ ସରୁ ରାତି ପାହିଯାଏ । ତା' ପରେ ଠାକୁର ଚାପ ଖେଳି ରାତିରେ ଘରକୁ ବାହୁଡ଼ନ୍ତି । ସେ ସମୟରେ ଦୋଳରେ ପଶାଖେଳ ଗୋଟିଏ ନିୟମିତ ଖେଳଥିଲା । ଚଉପାଡି ଉପରେ

ବସି ପାଣୁ ଅଜା, ଧଡ଼ି ଅଜା ଓ ବୟୋଜ୍ୟେଷ୍ଠ ବ୍ୟକ୍ତିମାନେ ସକାଳୁ ଗାଧୋଇ ପାଧୋଇ ପଶାଖେଳରେ ମାତି ଯାଉଥିଲେ। ଏ ଦୋଳପର୍ବ ଆଜି ପର୍ଯ୍ୟନ୍ତ ଅନୁଷ୍ଠିତ ହେଉଛି। ଜମିଦାରୀ ଗଲେ ମଧ ପ୍ରଥା ଅନୁସାରେ ନୀତି ଚାଲିଛି।

ଏ ଦୋଳ ହେଉଛି ଦୁଇ ପ୍ରକାରର। ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଜଦୋଳ। ପୂର୍ଣ୍ଣିମାଠାରୁ ପାଞ୍ଚଦିନ ପଞ୍ଚୁ ଦୋଳ। ପୁରପଲ୍ଲୀମାନଙ୍କରେ ଆମର ଏ ପ୍ରଥା ବହୁବର୍ଷ ଧରି ଚଳି ଆସୁଛି। ଏହା ଗୋଟିଏ ସାଂସ୍କୃତିକ ପର୍ବ। ପ୍ରଜା ଏବଂ ସାଧାରଣ ଲୋକଙ୍କର ଏହା ଏକ ଅପୂର୍ବ ମହୋତ୍ସବ। ଏହାଦ୍ୱାରା ଜମିଦାର ଓ ପ୍ରଜାମାନଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠିତ ହୁଏ। ଆମୋଦ ପ୍ରମୋଦ ଛଳରେ ହୃଦୟରେ ପ୍ରେମ ଭାବର ଆଦାନ ପ୍ରଦାନ ହୁଏ। ତାହା ବାସ୍ତବିକ୍ ଶ୍ରେୟସ୍କର। ଏହା ଏକ ବନ୍ଧନରେ ସମସ୍ତଙ୍କୁ ବାନ୍ଧି ରଖିଥାଏ। ଏଠାରେ ଜମିଦାର ପ୍ରଜା ଭିତରେ କୌଣସି ଭେଦଭାବ ନଥାଏ। ଏକ ମନ ଏକ ପ୍ରାଣରେ ସମବେତ ହୋଇ ଅପୂର୍ବ ଉତ୍ସାହରେ ଓ ରମଣୀୟ ପରିବେଶରେ ଯେଉଁ ସବୁ କାର୍ଯ୍ୟ ସମ୍ପନ୍ନ ହୁଏ ତାହା ଆଜି ଦୁର୍ଲ୍ଲଭ। ଏହି ଜମିଦାରୀ ଅନୁଷ୍ଠାନ ଯୋଗୁଁ ରାଜା ପ୍ରଜା ଭିତରେ ଗଭୀର ଆନ୍ତରିକତା ଥିଲା। ଏହା ଥିଲା ଗ୍ରାମ୍ୟ ଜୀବନର ଏକ ସାଂସ୍କୃତିକ ଛବି।....

## ଚତୁର୍ଥ ଭାଗ

ସେ ଗାଁରେ କେବଳ ଉଚ୍ଚ ପ୍ରାଥମିକ ବିଦ୍ୟାଳୟଟିଏ ଥିଲା। ଡାକଘର, ମାଇନର ସ୍କୁଲ କି ହାଇସ୍କୁଲ୍ କିଛି ନ ଥିଲା। ଗାଁ ଗଣ୍ଡାର ପିଲାମାନେ ପାଠ ପଢ଼ିବାକୁ ବହୁତ ଅସୁବିଧାରେ ସମ୍ମୁଖୀନ ହେଉଥିଲେ। ଚୌଧୁରୀ ପରିବାରର ପ୍ରାଣକୃଷ୍ଣ ମିଶ୍ର ଥିଲେ ଅନ୍ୟତମ। ସେ ପ୍ରାଣପଣେ ଚେଷ୍ଟାକରି ମାଇନର ସ୍କୁଲଟି ବସାଇଲେ। ସେଥିପାଇଁ ସେ ଥିଲେ ସମସ୍ତଙ୍କର ପ୍ରିୟପାତ୍ର। ସେ ଗାଁରେ ଡାକଘର ନଥିଲା। ତାଙ୍କରି ପ୍ରଚେଷ୍ଟାରେ ଗାଁରେ ଡାକଘରଟିଏ ହେଲା। ସେ ବଡ଼ ସୌଖୀନ ଲୋକ ଥିଲେ। ଗାଁ ରେ ଡ୍ରାମା ଥିଏଟର କରିବା ପାଇଁ ଆଗେଇ ଆସୁଥିଲେ। ମାତ୍ର ହଠାତ୍ ତାଙ୍କର ଦେହ ଖରାପ ହେବାରୁ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ। ଆଜି ପର୍ଯ୍ୟନ୍ତ ତାଙ୍କର ବାର୍ଷିକ ଶ୍ରାଦ୍ଧ ସ୍କୁଲ୍ ପ୍ରାଙ୍ଗଣରେ ମହାସମାରୋହରେ ଅନୁଷ୍ଠିତ ହୁଏ। ମାଇନର ସ୍କୁଲଟି ଭଲରେ ଚାଲିଲା। ଦୂରଦୂରାନ୍ତରୁ ପିଲାମାନେ ଆସିଲେ ପାଠ ପଢ଼ିବାକୁ। କ୍ରମେ ଗାଁଟି ଉନ୍ନତ ହେଲା। xxxx

ସେହିପରି ସେ ଗାଁରେ ହାଇସ୍କୁଲ୍ ନ ଥିଲା। ଚୌଧୁରୀ ଘରର ପିଲାମାନେ ଏବଂ ପାଖ ଆଖ ଦୂର ଦୂରାନ୍ତର ପିଲାମାନଙ୍କୁ ପଢ଼ିବା ପାଇଁ ବହୁତ ଅସୁବିଧାରେ ସମ୍ମୁଖୀନ ହେବାକୁ ପଡୁଥିଲା। ଚୌଧୁରୀ ଘରର ପିଲାମାନେ ବାଧ୍ୟ ହୋଇ କଟକରେ ପଢ଼ିଲେ।

ଆଜିକାଲି କଟକ ଯିବାକୁ ଅସୁବିଧା ନାହିଁ। ଆଗ ସମୟରେ କଟକ ଯିବାକୁ ବହୁତ ଅସୁବିଧା ହେଉଥିଲା। କାରଣ ମଝିରେ ବିରୂପା, ଗେଙ୍ଗୁଠି ନଈ। ନଈ ପାର ହୋଇ ବଳଦ ଗାଡ଼ିରେ ବୈରୀ ଷ୍ଟେସନ ଯିବାକୁ ପଡୁଥିଲା। ସେଠୁ ଟ୍ରେନ୍‌ରେ ଯିବାକୁ ହୁଏ କଟକ। ତିନି ସେଣାରେ ପାଣି ଉଠିଲେ କଟକ ଯିବ ଆଉ ଆସିବ। ଚୌଧୁରୀ ଘରର ରାଧାନାଥ ଚୌଧୁରୀ ବଡ ନାମଜାଦା ଲୋକ ଥିଲେ। ତାଙ୍କର ଚାରିଆଡେ ସୁନାମ। ପାଖ ଗାଁ ଗଣ୍ଡାର ଭଲମନ୍ଦ, ନ୍ୟାୟ ଅନ୍ୟାୟ ସେ ସବୁ ବୁଝୁଥିଲେ। ସେ ସବୁଠାରୁ ବଡ ମୁଖିଆ ଥିଲେ। ଦିନେ ସମସ୍ତେ ତାଙ୍କ ପାଖରେ ଆପତ୍ତି କଲେ ହାଇସ୍କୁଲ୍ କରିବା ପାଇଁ। ତାଙ୍କ ଉଦ୍ୟମରେ ହାଇସ୍କୁଲ୍ ଘର ଗଡା ହେଲା। ବର୍ଷକ ମଧ୍ୟରେ ହାଇସ୍କୁଲ୍ ଆରମ୍ଭ ହୋଇଗଲା। ଦୂରଦୂରାନ୍ତରୁ ପିଲାମାନେ ଆସି ପାଠ ପଢ଼ିଲେ। ସେ ମଧ୍ୟ ବହୁତ ଶୀଘ୍ର ଚାଲିଗଲେ। ହାଇସ୍କୁଲ୍ ନାଁ ଦିଆହେଲା–'ଚୌଧୁରୀ ରାଧାନାଥ ବିଦ୍ୟାପୀଠ'। ପ୍ରତ୍ୟେକ ବର୍ଷ ତାଙ୍କର ଶ୍ରାଦ୍ଧ ସ୍କୁଲ୍‌ରେ, ମହାସମାରୋହରେ ପାଳିତ ହୁଏ।

ରାଧାନାଥ ଚୌଧୁରୀ ମୋ ଜେଜେବାପା ହେବେ। ଆମେ ଝିଅଯାକ କିପରି ପାଠ ପଢିବୁ, ସିଲେଇ ଶିଖିବୁ ସେଥିପାଇଁ ସେ ତତ୍ପର ଥିଲେ। ତାଙ୍କର ହୃଦୟରେ କିଛି ପର ଆପଣା ଭାବ ନଥିଲା। ତାଙ୍କର ସ୍ନେହ-ଶ୍ରଦ୍ଧାର ପଟାନ୍ତରନାହିଁ।

x x x x

ସୁବର ଦିନେ ମନେପଡ଼ିଯାଏ ଜେଜେବାପାଙ୍କ କଥା। ଆମ ଘରର ଜ୍ୱାଇଁ ଆସି ପହଞ୍ଚି ଘରେ ଗୋଡ ନ ଦଉଣୁ ସେ ଡକାଇ ପଠାନ୍ତି ତାଙ୍କ ଘରକୁ ଯିବାପାଇଁ। ସେଠି ପହଞ୍ଚିଲେ ସେ ନ ଖୋଇ କେବେ ଛାଡନ୍ତି ନାହିଁ।

ସେହିପରି ଘରର ଝିଅଯାକ ଶାଶୁଘରୁ ଆସିଲେ, ଜେଜେବାପା ତାଙ୍କ କଟିଗି ଘରେ କରାନ୍ତି ଭୋଜି। ସେ ବଡ ମଜାଳିଆ ଲୋକ ଥିଲେ। ତାଙ୍କ କଥା ଭାବିଲେ ଆଖିରେ ସୁବର ଲୁହ ଚାଲି ଆସେ? ଆଜିକାଲି ସେଭଳି ଲୋକ ବିରଳ।

x x x x x

ସୁବ ବୋଉ ବାଡ଼ି ପିଣ୍ଡାରେ ମୁଣ୍ଡରେ ହାତ ଦେଇ ବସିଛନ୍ତି। ଆଖିରୁ ଲୁହ ଗଡ଼ିପଡୁଛି। ସୁବ ସ୍କୁଲରୁ ଆସି ଡାକ ପକାଇଲା ତା'ର ବୋଉକୁ।

ଦେଖିଲା ବୋଉ କାନ୍ଦୁଛି। ସେ ବୋଉର ଆଖିରୁ ଲୁହ ପୋଛି ଦେଇ କହିଲା–'କ'ଣ ହେଲା ତୋର ବୋଉ ? ତୁ କାହିଁକି କାନ୍ଦୁଛୁ ?'' ସୁବ ବୋଉ କହିଲେ ''କ'ଣ ହବ।'' ତୋ ଜେଜେମାଠାରୁ କେତେ ଗାଳିଖାଇବୁ—ବାପା ଆଉ ମୁଁ। ଏହା ଶୁଣି ସୁବ ମନ ଡହଳ ବିକଳ ହୋଇଗଲା। ସେ ଭାବିଲା ବୋଉ ଯାହା କହୁଛି ସବୁ ସତ। ସୁବ ଯେତେବେଳେ ପିଲା ହୋଇଥିଲା କିଛି ଜାଣିପାରୁ ନଥିଲା ; ଟିକେ ହେତୁ ହେଲାଠାରୁ ସେ ସବୁ ଜାଣିପାରୁଛି। ତା ବାପା ବୋଉଙ୍କର ଦୁଃଖ ଦେଖି ତାକୁ ବଡ ଅସହ୍ୟ ଲାଗେ। ଆଖି ଆଗରେ ତା'ର କେତେଗୁଡ଼ିଏ କଥା ମନେପଡ଼େ। ସେ ନିଜେ ଦେଖିଛି, ବାପା ବୋଉ ତା'ର ଯେତେ କଲେବି ସେ ସବୁବେଳେ ଅସନ୍ତୁଷ୍ଟ ହୁଏ। ସଦାସର୍ବଦା ବାପାଙ୍କୁ ଓ ବୋଉକୁ ଗାଳିଦିଏ। ଏପରି ଗାଳି ଯେ, ତାଙ୍କୁ କେହି ସହିପାରିବେ ନାହିଁ। ମା' ଗାଳି ଦେଲାବେଳେ ବାପା ଦାଣ୍ଡଆଡେ ଚାଲିଯାନ୍ତି ମନ ଦୁଃଖରେ। ବୋଉ କାନ୍ଦିକରି କହେ ବାପଘରେ ବେଶି ଗେହ୍ଲା ହୋଇଥିଲି ବୋଲି ଏତିକି ଦୁଃଖ ପାଉଛି। xxxx

ସୁବକୁ ଏସବୁ ଦେଖି ବଡ ବ୍ୟସ୍ତ ଲାଗେ। ସେ ତା ବୋଉ ଆଖିରୁ ଲୁହ ପୋଛି କହେ–ମା ତୁମକୁ ଏତେ ଭଲ ପାଉଥିଲା। ତୋ ବାପା ଜମିଦାର ଘରେ ବାହା ଦେଇଥିଲା ପୁଣି ଦୁଃଖ କ'ଣ ? ସୁବ ବୋଉ ମୁହଁ ଶୁଖାଇ କହିଲେ–ଭଲ ପାଉଥିଲେ କ'ଣ। ଯେତିକି ଭଲ ପାଇବେ ସେତିକି କହିବେ। ଦେଖିଲେ ତାଙ୍କୁ ଆମର ପ୍ରାଣରେ ଭୟ ?

– ତା ହେଲେ କେମିତି ଚଳୁଥିଲେ ?

– ନଣନ୍ଦମାନଙ୍କ ପାଇଁ ଚଳି ଯାଉଥିଲୁ ?

ବୋଉଠାରୁ ସବୁ ଶୁଣି ସୁବର ମନ ଖରାପ ଲାଗିଲେ ସୁଦ୍ଧା ସେ କହେ ଯାହା କହ ପଛେ ମା' ଟା ବଡ ଦୁଃଖୀ ?

x x x x x x x x x

ସୁବର ମନେପଡେ ଅତୀତ କଥା। ବଡବାପାଙ୍କ ଝିଅ ବସନ୍ତ ନାନୀର ବାହାଘର। ହର ପ୍ରସନ୍ନ ଭାଇଙ୍କ ବ୍ରତଘର ବଡ ଧୁମ୍‌ଧାମ୍‌ରେ ହେଲା। ଭିଣେଇ ଡାକ୍ତର। ବହୁତ ଭଲ। ଆମର ଦେହଖରାପ ହେଲେ ନାନୀ ଭାଇନାଙ୍କ ପାଖରେ ରହୁ। ଭାଇନା ସେତେବେଳେ କ୍ୱାଟର୍ସ ପାଇଥା'ନ୍ତି ମେଡିକାଲ୍‌ରେ। ସେ ଆମର ଯାହା କରିଛନ୍ତି, ଆମେ ଜୀବନରେ ସେହି ଋଣ ସୁଝି ପାରିବୁ ନାହିଁ। କମଳିନୀଙ୍କର ବଡ଼ ଝିଅ ଲାଗି ମନ ବଡ ଦୁଃଖ। ସେ କହନ୍ତି ଝିଅକୁ ବଡ଼ ଘର ଦେଖି ଦିଅର ମୋର ଦେଇଥିଲେ। ଜୋଇଁ ଗଞ୍ଜେଇ ଅଫିମ ଖାଇ ତଳିତଳାନ୍ତ

ହୋଇଗଲେ। ସେ ଚିନ୍ତାରେ ଝିଅ ମୋର ଖାଇବାକୁ ପିନ୍ଧିବାକୁ ନ ପାଇ ଶେଷରେ ମଲା। ତା'ପରେ ପରେ ଜୋଇଁ ଗଲେ। ସାନ ଝିଅକୁ ଜୋଇଁ ଦେଖି ଦେଇଥିଲେ। ସମ୍ପତ୍ତି କିଛି ନ ଥିଲା। କିନ୍ତୁ ଜୋଇଁ ଯୋଗ୍ୟ। ତାଙ୍କ ବାହୁବଳରେ ଦି' ପଇସା ରୋଜଗାର କରି ପିଲାଙ୍କୁ ଯୋଗ୍ୟ କରି ଆନନ୍ଦରେ ଚଳିଲେ।

କମଳିନୀ ଦୁଇବୁନ୍ଦା ଆଖିରୁ ଲୁହ ଗଡ଼ାଇ ପକାଇ କହିଲେ, ଏଇ ହଉଛି ଭାଗ୍ୟ।

ଜେଜେମା ପାଖରେ ବସି ସୁବ ମା'ର କହିବା କଥା ସବୁ ଶୁଣୁଥାଏ।

କମଳିନୀ ଦୁଇ ପୁଅ ପୁତୁରାଙ୍କ ପାଖରେ ରହି ଚଳୁଥାନ୍ତି। କ୍ରମେ ଘରର ନାନା ପରିସ୍ଥିତି ନେଇ ବଡ଼ ପୁଅର ମତିଗତି ଭଲ ନ ହେଲେ ମଧ୍ୟ କମଳିନୀ ତାଙ୍କର କିଛି କରନ୍ତି ନାହିଁ। ସବୁ ରାଗ ଶୁଝାନ୍ତି ସାନ ପୁଅ ବୋହୂ ଉପରେ। ଏହିପରି ଅନେକ ଘଟଣା ନେଇ ନିଜ ନିଜ ଭିତରେ ଅଶାନ୍ତି ସୃଷ୍ଟି ହେଲା। ଶେଷରେ ବାଧ୍ୟ ହେଲେ ଭିନ୍ନେ ହବା ପାଇଁ। ଭିନ୍ନେ ହବା କଥା ଶୁଣି କମଳିନୀଙ୍କ ମନରେ ଘୋଟି ଆସିଲା ବିଷାଦର ଛାୟା। ସେ ମଝିରେ ମଝିରେ ସାନ ଝିଅ ପାଖକୁ ଯାଇ ବ୍ୟସ୍ତ ହୁଅନ୍ତି।

ନୀଳାଦ୍ରି ନାଥ ବାବୁ ମା' ବ୍ୟସ୍ତ ହବା କଥା ଭଉଣୀଠାରୁ ସବୁଶୁଣି ମନରେ ବହୁତ ଦୁଃଖ ଅନୁଭବ କରନ୍ତି ଏବଂ ସେଥିପାଇଁ ମା'କୁ ବହୁତ ବୁଝାନ୍ତି। ନିଜର ଦୁଃଖ କଥା ଭାବନ୍ତି ରାତିରେ ଶୋଇଲାବେଳେ। ଚାହୁଁ ଚାହୁଁ ତିନି ବର୍ଷର ଝିଅ ଚାଲିଗଲା। ତା'ପରେ ଦଶ ବର୍ଷର ଝିଅ କୁନ୍ମ ଚାଲିଗଲା। ତା ପାଇଁ ବହୁତ ପଇସା ଖର୍ଚ୍ଚ କରି ସୁବ ତଳେ ୪/୫ ଟା ମରିଗଲେ। ସ୍ତ୍ରୀର ମୁଣ୍ଡ ଖରାପ ହୋଇଗଲା। ସୁବ ମାଟ୍ରିକ୍ ପଢୁଥାଏ କଟକରେ। ଏକା ସୁବ ଘରେ। ସେ ଦୁଃଖରେ ଅସ୍ଥିର ହୋଇପଡନ୍ତି। ଏମିତି କିଛି ଦିନଗଲା।

....ଦିନେ କମଳିନୀ ପୁଅକୁ କହିଲେ ସୁବର ଜାତକ ଟିକେ ନେଇ କାହାକୁ ଦେଖା। ମା' କହିଲାରୁ ନୀଳାଦ୍ରି ନାଥ ବାବୁ ଜାତକ ନେଇ ଜ୍ୟୋତିଷ ପାଖକୁ ଗଲେ। ଜ୍ୟୋତିଷ ଦେଖି କହିଲା ଏ ଝିଅର ରାଶି ବହୁତ ଉଚ୍ଚ। ଏ ଝିଅକୁ କନ୍ୟାଦାନ ନ କଲେ ପିଲା କେହି ବଞ୍ଚିବେ ନାହିଁ। ନୀଳାଦ୍ରି ନାଥ ବାବୁ ଜ୍ୟୋତିଷ ପାଖରୁ ଆସି ମାକୁ ସବୁକଥା କହିଲେ। ଝିଅ ମୁହଁକୁ ଚାହିଁ କାନ୍ଦି ପକାଇଲେ କମଳିନୀ।

କମଳିନୀ ନାତୁଣୀକୁ ବହୁତ ଭଲ ପାଆନ୍ତି। ସେ ପୁଅର କାନ୍ଦ ଦେଖି କହିଲେ ହଇରେ ପିଲା ଝିଅଟା ଭାତ ଖାଇ ହାତ ଧୋଇ ଜାଣିନି। ୧୧

ବର୍ଷର ଝିଅ। ଭାତରେ ଦୁଧ ନ ପକାଇଲେ ଖାଇପାରେନି। ତାକୁ ବାହା ଦବା ଦରକାର ନାହିଁ। ମୁଁ ନିଜେ ଯାଇ ତ୍ରିବେଣୀଶ୍ୱର ମହାଦେବଙ୍କ ପାଖରେ ଗୁଆ ବସାଇବି। ସେହି ଏକା ତାକୁ ରକ୍ଷା କରିବେ...

"ଯାହାକୁ ରଖିବେ ଅନନ୍ତ
କି କରିପାରେ ବଳବନ୍ତ।"

ମା'ଙ୍କ କଥା ଶୁଣି ନୀଳାଦ୍ରି ନାଥ ବାବୁଙ୍କ ମନରେ ସାହସ ଆସିଲା। ସେ ଆଉ ଝିଅର ବାହାଘର କଥା ନ ଭାବି ଚୁପ୍ ହୋଇ ରହିଲେ।

ତିନି ଭାଇଯାକ ଏକାଠି ଥିଲାବେଳେ ନାନୀ ବାହାଘର ବ୍ରତଘର ସବୁ ଚାରି ପାଞ୍ଚ ବର୍ଷ ଭିତରେ ସବୁ କାମ ହେଲା। ମାତ୍ର ଘରର ପରିସ୍ଥିତି ନେଇ ତିନି ଭାଇ ଭିନ୍ନେ ହେଲେ। ନୀଳାଦ୍ରି ନାଥ ବାବୁ ମା'କୁ ପାଖରେ ରଖିଲେ। ଘରର ସବୁ ଜିନିଷ ବଣ୍ଟାକୁଣ୍ଟା ହେଲା। ସମସ୍ତେ ଶ୍ୱଶୁର ଘର ଜିନିଷ ବୋଲି ଆପତ୍ତି କରୁଥାନ୍ତି। ନୀଳାଦ୍ରି ନାଥ ବାବୁ କିଛି ନ କହି କାନ୍ଥକୁ ଆଉଜି ଦୁଃଖରେ ବସିଥାନ୍ତି। ତାଙ୍କ ଭାଗରେ ବାସନ ଖଣ୍ଡେ ମଧ ପଡ଼ିଲା ନାହିଁ। କାରଣ ସେ ବାହା ହେଲା ବେଳେ ତାଙ୍କ ଶ୍ୱଶୁର ଘର ଅବସ୍ଥା ଭଲନଥିଲା। ୩/୪ ଦିନ ପତରରେ ଖୋଇଲେ ତାଙ୍କ ପୁଅଝିଅଙ୍କୁ।

ତା ଆରଦିନ ନୀଳାଦ୍ରି ନାଥ ବାବୁ ଭଣ୍ଡାରିକି ପଇସା ଦେଇ ପଠେଇଲେ ତାଙ୍କ ଶ୍ୱଶୁରଙ୍କ ପାଖକୁ। ସେତେବେଳକୁ ତାଙ୍କ ଶ୍ୱଶୁର ପଟିଆ ରାଜାଙ୍କ ଦେୱାନ ଥିଲେ। କୋଉଁ ଟଙ୍କା ପଠାଇଛନ୍ତି ବାସନ କିଣିବା ପାଇଁ। ଝିଅର ଦୁଃଖ ଶୁଣି ସେ ବାସନ କିଣି ପଠାଇଲେ ଆଉ ଟଙ୍କାକୁ ଫେରାଇଦେଲେ। ଭିନ୍ନେ ହେଲା ପରେ ଜମିଦାରୀ ଚାଲିଗଲା। ନୀଳାଦ୍ରି ନାଥ ବାବୁ ଅଭାବରେ ପଡ଼ିଲେ। ପୁଅ କିପରି ପାଠ ପଢ଼ିବ ସେ ଚିନ୍ତାରେ ବ୍ୟସ୍ତ ହୋଇପଡ଼ିଲେ। ସୁବର କାଲିପରି ଗୋଟିଏ ଗୋଟିଏ କଥା ମନେପଡୁଛି। ହର ପ୍ରସନ୍ନ ଭାଇନା ମାଟ୍ରିକ୍ ପରୀକ୍ଷା ଦେଇଥାନ୍ତି। ରେଜେଲ୍ଟ ବାହାରି ନଥାଏ। ବାପା ଭାତ ଖାଇବସିଥାନ୍ତି। ବଡ଼ବାପା ଆସି ପାଟି କଲେ ଭାଇ ଉପରକୁ। ମୁଁ ନାହିଁ କରୁଛି ପଢ଼ାଇବାକୁ ତୁ ପଢ଼େଇଲୁ ପୁଅ ତୋର ଫେଲ୍ ହୋଇଛି। ବାପା ଭାତ ଥାଳି ପାଖରୁ ଉଠି କଟକ ଚାଲିଗଲେ ବୋଉକୁ କିଛି ନ କହି। ସେତେବେଳେ କଟକ ଯିବାକୁ ବହୁତ କଷ୍ଟ। ସେ ଅତି କଷ୍ଟରେ କଟକରେ ସଉଦିନାନୀ ଘରେ ପହଞ୍ଚି ମୁଣ୍ଡରେ ହାତ ଦେଇ ଥକାମାରି ବସିପଡ଼ି କାନ୍ଦିଲେ।

ପିଉସା ଜାଣିଥାନ୍ତି ଫାଷ୍ଟଡିଭିଜନ୍‌ରେ ପାସ୍ କରିବା କଥା। ସେ ଖବରକାଗଜ ଆଣି ଦେଖାଇଦେଲେ ଶଳାକୁ। କହିଲେ ଦେଖ୍ ପୁଅ ତୋର ଫାଷ୍ଟ ଡିଭିଜନ୍‌ରେ

ପାସ୍ କରିଛି। ବାପା ପିଉସାଙ୍କଠାରୁ ଶୁଣି ସ୍ତମ୍ଭୀଭୂତ ହୋଇପଡ଼ିଲେ। ମନରେ ଭାବିଲେ ମା ଭାଇ ଯଦି ଶତ୍ରୁ ହେଲେ ମୁଁ କାହା ଆଗେ କହିବି? ମନକୁ ବୁଝାଇ ନାନୀ ଘରେ ଖାଇପିଇ ମନ ଖୁସିରେ ଗାଁକୁ ଗଲେ।

ଭିନ୍ନେ ହବା ପରେ ପରେ ଜମିଦାରୀ ଚାଲିଗଲା। ନୀଳାଦ୍ରି ନାଥ ବାବୁ ପୁଅର ରେଭେନ୍ସା କଲେଜରେ ନାଁ ଲେଖାଇ ହଷ୍ଟେଲରେ ରଖାଇଦେଲେ। ତାଙ୍କୁ ଚିନ୍ତା ହୋଇଗଲା କିପରି ପୁଅକୁ ମାସକୁ ମାସ ଟଙ୍କା ଯୋଗାଇବେ। କିନ୍ତୁ ଜମିଦାରୀ ଗଲେ ମଧ ଚାରି ପାଞ୍ଚୋଟି କଟିରି ଥାଏ। ସେଥିରେ ପୁରୀ ପାଖରେ ଗୋଟେ ବଡ଼ କଟିରି ଥାଏ। ସେଠି ବହୁତ ନଡିଆ ହୁଏ ଯାହା ବାଣ୍ଟରେ ପଡେ ତାକୁ ସେ ବିକି ପୁଅ ପାଖକୁ ଟଙ୍କା ପଠାନ୍ତି।

ସୁବର ମନେପଡେ ମାମୁଁଘର କଥା। ମାମୁଁଘର ସମସ୍ତେ ଆମକୁ ବହୁତ ଭଲ ପାଆନ୍ତି। ଅଧିକାଂଶ ଦିନ ମାମୁଁଘରେ ଆମେ ରହୁ। ବଡ ମାମୁଁ ବଡ଼ ଇଞ୍ଜିନିୟର୍ ଥିଲେ। ସାନ ମାମୁଁ ବହୁତ ଭଲ। ହର ପ୍ରସନ୍ନ ଭାଇନା କଲେଜରେ ପଢ଼ିଲା ବେଳେ ଛୁଟିରେ ପଳାନ୍ତି ମାମୁଁଘରକୁ। ଫେରିଲା ବେଳକୁ ସମସ୍ତଙ୍କ ପାଖରେ ଆଧିପତ୍ୟ ବିସ୍ତାର କରି କିଛି ରୋଜଗାର କରି ଫେରି ଆସନ୍ତି କଟକ। ଆଖି ଆଗରେ ଅଜା, ଆଈ, ବଡ ମାମୁଁ, ମାଇଁ, ସାନ ମାଇଁ ସବୁ ଚାଲିଗଲେ। କେବଳ ଆମର ସାନ ମାମୁଁ ଅଛନ୍ତି। ସେ ଆମକୁ ବହୁତ ସ୍ନେହଶ୍ରଦ୍ଧା କରନ୍ତି। ମୁଁ ବୁଢ଼ୀ ହୋଇଗଲି। ତାଙ୍କ ପାଖକୁ ଗଲେ ମା ଆସିଲୁ କହି କୁଣ୍ଢାଇ ପକାନ୍ତି। ମୋ ମାମୁଁ ସେମିତି ଥା'ନ୍ତୁ। ଜଗନ୍ନାଥ ତାଙ୍କୁ ଦୀର୍ଘାୟୁ କରାନ୍ତୁ।

କମଳିନୀଙ୍କ ମନ ଭଲ ରହିଲା ନାହିଁ। ପୁଅମାନେ ଭିନ୍ନେ ହବା ପରେ ସେ ଦୁଃଖରେ ଭାଙ୍ଗି ପଡ଼ିଲେ। ସାଇପଡିଶାଙ୍କ ଆଗରେ କହିଲେ ମୋ ଜୀବନ ଧିକ୍। ମୁଁ ବଞ୍ଚି ଥାଉ ଥାଉ ମୋ ଭାଗ୍ୟରେ ଏଇଟା ଥିଲା ଦେଖିବାକୁ।

କମଳିନୀ ମଝିରେ ମଝିରେ କଟକ ଯା'ନ୍ତି ଝିଅ ପାଖକୁ। ପୁଅମାନଙ୍କ ପାଇଁ ବହୁତ ବ୍ୟସ୍ତ ହୁଅନ୍ତି ଝିଅ ଆଗରେ। ସଉଦି ନାନୀ ମା' ଉପରେ ପାଟିକରି କହେ, ଯିଏ ଯେପରି କରିବ, ସେମିତି ଫଳ ପାଇବ। "ତୁ ସିନା ଆମକୁ ଜନମ ଦେଇଛୁ; ହେଲେ ଆମକୁ କରମ ତ ଦେଇନାହୁଁ।"

ସେ କାନ୍ଦି ପକାଇ କହିଲେ—"ମୁଁ କେତେ ଦୁଃଖ କଷ୍ଟରେ ଯାଙ୍କୁ ମଣିଷ କଲି, ଯାଙ୍କ ସୁଖ ଦେଖିବା ପାଇଁ ନା ଦୁଃଖ ଦେଖିବା ପାଇଁ।"

—ମଲା ଯାହା ଭାଗ୍ୟରେ ଯାହା ଅଛି ତୁ କଣ କରିବୁ କଥାରେ ଅଛି—

"କପାଳ ଲେଖନ
କେ କରିବ ଆନ।"

କମଳିନୀ କାନ୍ଦି କାନ୍ଦି କହିଲେ–ତୋ ବାପା ଗଲେ। ମୋପାଇଁ ରଖିଯାଇଛନ୍ତି ଜଗତଯାକର ଦୁଃଖ ଭୋଗ କରିବାକୁ। ପ୍ରଭୁ ମୋତେ କେମିତି ନେଇଯାନ୍ତୁ। ଦିନେ ନୀଳାଦ୍ରି ନାଥ କଟକ ଯାଇଥିଲେ। ମା' କହିବା କଥା ଭଉଣୀଠାରୁ ସବୁ ଶୁଣି ଘରେ ବ୍ୟସ୍ତ ହେଲେ ଝିଅ ଆଗରେ।

କାରଣ ନୀଳାଦ୍ରି ନାଥ ବାବୁ କେବେ ସ୍ତ୍ରୀ ଆଗରେ ଦୁଃଖ ପ୍ରକାଶ କରନ୍ତି ନାହିଁ। ତା'ର ଦେହ ପାଇଁ। ସ୍ତ୍ରୀର ଦେହ ଖରାପ। ମା'ର ଅସନ୍ତୁଷ୍ଟ ଭାବ ଏବଂ ପିଲାଙ୍କ ଚିନ୍ତାରେ ସେ ଭାଙ୍ଗି ପଡ଼ିଲେ।

କମଳିନୀ, ସ୍ୱାମୀ ଗଲାଦିନରୁ ସବୁଦୁଃଖ କଷ୍ଟ ସହି ସହି ଚିଡ଼ିଚିଡ଼ା ହୋଇଗଲେ। ବିଶେଷତଃ ମାମୁଁଘର ଉପରେ ବେଶୀ ରାଗ। କାହିଁକି ସେ ରାଗେ ସୁବ ବି କିଛି ବୁଝିପାରେ ନାହିଁ। ତା'ର ବୋଉ ବାପା ଯେତେ କଲେ ବି ସେ ଦେଖିଲେ ମୁହଁ ମୋଡ଼େ। ସୁବ ଏସବୁ ଦେଖିଲେ ତାକୁ ଯେତିକି ଦୁଃଖ ଲାଗେ ସେତିକି ହସ ମାଡ଼େ। ସେ କହେ–

ତା'ର ଜେଜେମାର କେତେଗୁଡ଼ିଏ ଭଲ ଗୁଣ ଥିଲା। ତା'ର କରଚୁଲି ରନ୍ଧା ତରକାରି, ଆଚାର, ବଡ଼ି ଯିଏ ଖାଇଥିବ ଭୁଲିପାରିବ ନାହିଁ। ଜେଜେମା ଯେତେବେଳେ ପୁରୀ ଯାଏ ହବିଷ କରିବାକୁ, ସେତେବେଳେ ଆମେ ମା ଶୋଇବା ଝରକା ବାଟେ ବାଡି ପୂରାଇ ଆଚାର ଆଣି ଖାଉ। ମା' ଆସି ବହୁତ ଆମକୁ ଗାଳିଦିଏ। ମା'ର ଗାଳିକୁ ଆମର ଖାତିରି ନଥାଏ।

ବୁଢ଼ୀର ତାସ ଖେଳରେ ବହୁତ ସଉକ। ତା ପାଖରେ ବହୁତ ତାସ ଥାଏ। ସେ ଖାଇଦେଇ ତାସ ନେଇ କେତେ ନାତିନାତୁଣୀଙ୍କ ସାଙ୍ଗରେ ଧରି ଖେଳେ। ନଚେତ୍ ଆମ ଘରକୁ ଲାଗିକରି ଜେଜେବାପା ଥା'ନ୍ତି। ତାଙ୍କ ବୋଉ ଆମର ସାନମା। ବୋଉର ମାଉସୀ ରଙ୍ଗ ଆଈ ମଧ୍ୟ ତାସ୍‌ଖେଳରେ ଭାଗ ନିଅନ୍ତି। ଆଜି ସମସ୍ତେ ଗଲେଣି। ଆଜି ସମସ୍ତଙ୍କ କଥା ସୁବର ମନେପଡିଲେ ଆଖିରେ ଲୁହ ଭରି ଉଠେ।

ସମସ୍ତେ ଭିନ୍ନେ ହବା ପରେ ପଇସାପତ୍ର ଅଭାବରୁ ନୀଳାଦ୍ରି ନାଥ ବାବୁ ଗୋଟିଏ ଗୋଦାମ କରିଥାନ୍ତି ଦାଣ୍ଡରେ। ସେଥିରୁ ଯାହାହୁଏ ଘର ଖର୍ଚ୍ଚ ଚଳିଯାଏ। ସେହି ବର୍ଷ କଟକରେ ହଉଥାଏ ଏକ୍‌ଜିବିସନ୍। ଘରୁ ସମସ୍ତେ ଚାଲିଯାଇଥା'ନ୍ତି କଟକକୁ ଏକ୍‌ଜିବିସନ୍ ଦେଖିବାକୁ। ଏକା ଥାନ୍ତି ସୁବ ବୋଉ ଏବଂ ଲେଖାଁଜୋଖାରେ ବାଜନାନୀ। ତିନିଘର ଯାକର ଚାକର ଥା'ନ୍ତି। ସାଧାରଣତଃ ମଫସଲ ଗାଁ ଗଣ୍ଡାରେ ଖରା ଦିନେ ଚୋରିହୁଏ। ସେହି ସମୟରେ ଘରେ ଚୋର ପଶିଲେ ଚୋରି କରିବା ପାଇଁ; କିନ୍ତୁ ଚୋରି କରି ପାରିଲେ ନାହିଁ। ଏସବୁ କଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗିବ। ସୁବ ସେଥିରୁ କିଛି କହୁଛି–

ଖରାଦିନ ସୁବ ବୋଉ ସନ୍ଧ୍ୟାବେଳୁ ପଖାଳ ଖାଇ ଘର ପିଣ୍ଡା ଉପରେ ସଉପ ପକାଇ ଚାହିଁ କରି ଶୋଇଛନ୍ତି।....ଆଉ ସବୁ ଚାକରମାନେ ଘରର କାମ ସାରି ଖାଇଲାବେଳକୁ ରାତି ବାର ହୋଇଯାଏ। ସେଦିନ ରାତିରେ ନଟ ତରକାରି ବସାଇଛି। ଆମ ଗାଁ ଭାଇଆ ପିଲା ତା ନାଁ ରତ୍ନାକର। ସେ ଆସି ନଟକୁ କହିଲା–''ନଟିଆନା ମୋତେ ଗଣ୍ଡେ ଖାଇବାକୁ ଦବୁ।''

....ନଟ ଆସି ପଚାରିଲା ସାଆନ୍ତାଣି, ରତ୍ନାକର ମାଗୁଛି ଖାଇବାକୁ। ସୁବବୋଉ ନାହିଁ କରିପାରିଲେ ନାହିଁ। କହିଲେ ହଉ ମାଗୁଛି ତ ତାକୁ ଗଣ୍ଡେ ଖାଇବାକୁଦେ।

ସେତିକିବେଳେ ନଟ ଯାଇଥିଲା ବାହାରକୁ। ରତ୍ନାକର ସୁବିଧା ଦେଖି ହାଣ୍ଡିରେ ବିଷ ପକାଇଦେଇ ତା ଘରକୁ ଚାଲିଗଲା। ସେ ଏତେକଥା କରିଛି ଘରେ କେହି ଜାଣିନାଆନ୍ତି। ଆମ ଗାଁ ପାଖରେ ତିଳିଦା ବୋଲି ଗାଁ ଥିଲା। ସେଠିକାର ଲୋକ ପ୍ରାୟ ଚୋର। ସେମାନଙ୍କର ଘରୁ ଚୋରି କରିବା ଲକ୍ଷ୍ୟ ଥିଲା। ସେମାନେ ରତ୍ନାକରକୁ ହାତ କରିଥିଲେ। ଘରେ କେଉଁଠି ସୁନା, ରୁପା, ଗହଣା ଗଣ୍ଠି ଅଛି ରତ୍ନାକର ସେମାନଙ୍କୁ ସବୁ କହି ଦେଇଥିଲା।

ରାତି ୧୦ଟା ବେଳକୁ ସବୁ ଚାକର ଯାଇ ବସିଲେ। ନଟ ସମସ୍ତଙ୍କୁ ଖାଇବାକୁ ଦେଲା। ସମସ୍ତେ ଖାଇ କହିଲେ–ନଟିଆନା ଆଜି ତରକାରି କାହିଁକି ଓଦାଳିଆ ଲାଗୁଛି। ନଟିଆ କହିଲା–ଜିରାଗୁଣ୍ଡ ବୋଧେ ବେଶି ପଡିଯାଇଛି, ତୁମେ ଖାଇଦିଅ। ଅତି କଷ୍ଟେ ମଷ୍ଟେ ତରକାରି କିଛି କିଛି ସମସ୍ତେ ଖାଇଲେ। ଜିରାଗୁଣ୍ଡ ବେଶି ହୋଇଯାଇଛି। ତରକାରି କିପରି ନଷ୍ଟ କରିଦେବ ସେଥିପାଇଁ ନଟ ବେଶି ତରକାରୀ ଖାଇଦେଲା।

ଚୋରମାନେ ଚୋରି କରିବା ପାଇଁ ଉପର ଛାତରେ ଲୁଚି ରହିଥା'ନ୍ତି ଏବଂ ଅପେକ୍ଷା କରିଥାନ୍ତି ଏମାନେ ଶୋଇପଡିଲେ ସେମାନେ ଚୋରି କରିବେ ବୋଲି।

ରାତି ଗୋଟାଏ ବେଳକୁ ଚାକରଙ୍କର ଗୋଡହାତ ଝିମି ଝିମି ହୋଇ ବାନ୍ତି ହେବାକୁ ଲାଗିଲା। ଆସ୍ତେ ଆସ୍ତେ ସବୁ ଚାକର ପାଗଳ ପରି ହେଲେ। ସୁବ ବୋଉ ଏସବୁ ଦେଖି ଡରରେ କବାଟ କିଳି ଘରେ ଭିତରେ ଥା'ନ୍ତି।

କେବଳ ଘରେ ନିତ୍ୟାନନ୍ଦ ଜମାଦାର। ତା'ର ଦେହ ଭଲ ନ ଥିବାରୁ ସେ ରାତିରେ କିଛି ଖାଇ ନ ଥିଲା। ସେ ଯେମିତି ଏସବୁ ଦେଖିଲା ଗାଁ ଲୋକଙ୍କୁ ଡାକ ପକାଇଲା। ସମସ୍ତେ ଲଣ୍ଠନ, ବାଡି, ଠେଙ୍ଗାଧରି କୋଠା ଉପରକୁ ଗଲେ। ଏମାନଙ୍କୁ ଦେଖି ଚୋରମାନେ ଦୌଡ଼ାଦୌଡ଼ି ହୋଇ କୋଠାଉପରୁ

ବାଡି ପଟେ ଡେଇଁ ପଳେଇଗଲେ। ତାଙ୍କ ପଛରେ ଲୋକମାନେ ଦୌଡ଼ିଲେ ମଧ୍ୟ ଅନ୍ଧାର ରାତିରେ ତାଙ୍କୁ ଧରିପାରିଲେ ନାହିଁ।

ଏଣେ ଚାକରମାନଙ୍କ ଅବସ୍ଥା ସାଂଘାତିକ। ବୋଉ ଏସବୁ ଦେଖି କାଠ ପାଲଟି ଗଲେଣି। ଘରପାଖର ଜେଜେବାପା। ସେ ଯାଇଥିଲେ ବୈରୀ। ରାତି ଗୋଟାଏ ବେଳେ ଘରକୁ ସେ ଫେରିଲେ। ଏସବୁ ଦେଖି ସେ ସଙ୍ଗେ ସଙ୍ଗେ ଜୟପୁରରୁ ଡାକ୍ତରଙ୍କୁ ଡକାଇ ଚାକରମାନଙ୍କର ଚିକିତ୍ସା କରାଇଲେ।

ସମସ୍ତେ ଔଷଧପତ୍ର ଖାଇ ଟିକେ ସୁସ୍ଥ ହେଲେ। ତା ଆରଦିନ ଜେଜେବାପା କଟକକୁ ଲୋକ ପଠାଇଲେ ଚିଠି ଦେଇ। ସେତେବେଳେ ବିହାରୀ ଚୋର ମାତିଥାଏ। କଟକରେ ସମସ୍ତେ ସନ୍ଧ୍ୟା ହେଲେ ବାହାର କବାଟ ବନ୍ଦ କରିଥାନ୍ତି।

ଗାଁରୁ ଲୋକ ଯାଇ ପହଞ୍ଚିଲା ବେଳକୁ କଟକରେ ରାତି ନ'ଟା। ଲୋକଟି ଯେତେ ବାଡ଼େଇଲେ ବି କବାଟକୁ ଭୟରେ ନୀଳାଦ୍ରି ନାଥ ବାବୁ ଖୋଲୁ ନଥାନ୍ତି। ଲୋକଟି ବସାର ପାଚିରି ଡେଇଁ ଚିଠି ପକାଇଦେଲା। ନୀଳାଦ୍ରି ନାଥ ବାବୁ ଚିଠି ପଢି କବାଟ ଖୋଲିଦେଲେ। ଗାଁ ଲୋକସବୁ ଘଟଣା ଗୋଟି ଗୋଟି କରି କହିଗଲା। ସେ ସବୁ ଶୁଣିଲେ। ସଙ୍ଗେ ସଙ୍ଗେ ଝିଅକୁ ଓ ତାଙ୍କ ମା'କୁ ନେଇ ଗାଁକୁ ଆସି ଦେଖିଲେ ଗାଁରେ ଧରପଗଡ କରି ରତ୍ନାକରକୁ ଚଉପାଢି ଉପରେ ବାନ୍ଧି ଦେଇଛନ୍ତି। ସେ ରାଗରେ ରତ୍ନାକରକୁ ବାଡେଇଲେ। କିଛି କାହାର କ୍ଷତି ନ ହୋଇଥିବାରୁ ଓ ଚୋରି ନ ହେବାରୁ ଚୁପ୍‌ଚାପ୍ ହୋଇ ରହିଲେ। ଗାଁ ଲୋକ ଚୋରି ଯୋଗୁଁ ଛାନିଆରେ ରାତିରେ ଶୋଇପାରନ୍ତି ନାହିଁ। ଏହିପରି ଚାରିପାଞ୍ଚମାସ ଗାଁରେ ହାଲ ହୁରାଳି ପଡିଲା।

କାର୍ତ୍ତିକ ମାସ ଗାଁ ହବିଷାଳି ସବୁ ରାତିରୁ ଉଠି ନାଳକୁ ଗାଧୋଇ ଯା'ନ୍ତି।

ସୁବର ଦେହ ଭଲ ନ ଥାଏ। ନୀଳାଦ୍ରି ନାଥ ବାବୁ ଅନ୍ଧାରୁ ଅନ୍ଧାରୁ ଉଠିଲେ। ମୂଲିଆକୁ ଡାକି ଶଗଡ ଠିକ୍ କଲେ। ଝିଅକୁ ନେଇ କଟକ ଯିବେ। ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଗଲା ଦୋକାନ ଉପରେ। ଘର ଠିଆମେଲା, ଦୋକାନରେ କିଛି ନାହିଁ। ସବୁ ଚୋରି ହୋଇଯାଇଛି। ସେ ଝିଅକୁ ନେଇ କଟକ ଯିବେ କ'ଣ ଦୁଃଖରେ ମୁଣ୍ଡରେ ହାତଦେଇ ବସିପଡ଼ିଲେ। ଥାନାରେ ଖବର ଦିଆହେଲା। ଦାରୋଗା ପୁଲିସ ସବୁ ଆସି ତଦାରଖ କରି ଯେତେ ଚେଷ୍ଟା କଲେ ଜିନିଷ ମିଳିଲା ନାହିଁ। ଅଭାବରେ ପଡି ବ୍ୟସ୍ତ ହୋଇପଡିଲେ ନୀଳାଦ୍ରି ନାଥ ବାବୁ।

ସୁବକୁ ଟାଇଫଏଡ୍ ଜ୍ୱର ହେଲା। ବହୁତ ଦେହ ଖରାପ। ନୀଳାଦ୍ରି ନାଥ ବାବୁ କିଛି ଉପାୟ ନ ପାଇ ଝିଅକୁ ସବାରିରେ ନେଇଗଲେ ବୈରୀ।

ବୈରୀ ଷ୍ଟେସନରୁ ଟ୍ରେନ୍‌ରେ ଦିହେଁ କଟକ ଗଲେ। ସେଠାରେ ଦୁଇମାସ ରହି ଝିଅର ଦେହ ଭଲ ହବାରୁ ଘରକୁ ନେଇ ଆସିଲେ।

ଦିନେ ଦିନେ କମଳିନୀଙ୍କର ରାଗ ପଞ୍ଚମକୁ ଉଠେ। ସବୁଦିନେ ପୁଅ ବୋହୂଙ୍କୁ ଗାଳିଦିଏ। ସୁବ ଜେଜେମାକୁ ସାମ୍ନାରେ କିଛି ନ କହିଲେ ମଧ୍ୟ ସେ ମନେ ମନେ କହେ-"ହେ ପ୍ରଭୁ ଏ ବୁଢ଼ୀ ମରିଯା'ନ୍ତାକି?" ଜେଜେମାର ଏ ଗୁଣ ଜମା ତାକୁ ଭଲ ଲାଗେନା।

ନୀଳାଦ୍ରି ନାଥ ବାବୁ ଓ ତାଙ୍କ ସ୍ତ୍ରୀ ବହୁତ ପୂଜାପୂଜି କରି ଦିଅଁ ଦେବତାଙ୍କୁ ଡାକିବାରୁ ପୁଅଟିଏ ହେଲା। ଅପୁଅା ଘରେ ପୁଅଟିଏ ହେଲେ ଯେପରି ଆନନ୍ଦ ଲାଗେ ସେହିପରି ଘର ଆନନ୍ଦରେ ପୂରି ଉଠିଲା। ଅତି ଶରଧାରେ ତାକୁ ଡାକିଲୁ କୁନୁ?

ପୁଅକୁ ଦୁଇମାସ ହୋଇଛି। ସୁବ ବୋଉଙ୍କ ଦେହ ବହୁତ ଖରାପ ହେଲା। ତା'ର ଯତ୍ନ ସୁବ ହାତରେ ପଡ଼ିଲା। ସେ ତାକୁ ତଳେ ଶୋଇଦିଏ ନାହିଁ। କିପରି ଖାଇବ, ତେଲ ଘଷିହେବ, ହଳଦୀ ଲଗାଇବ ତା'ରି ସେବାରେ ଦିନ କଟିଯାଏ ସୁବର। ଏସବୁ ଦେଖି ନୀଳାଦ୍ରି ନାଥ ବାବୁ ଯେତିକି ଖୁସି ହୁଅନ୍ତି ଝିଅ ଲାଗି ବହୁତ ବ୍ୟସ୍ତ ହୋଇଯା'ନ୍ତି।

ସୁବ ପିଲାଦିନରୁ ମାତୃ ସ୍ନେହ କିଛି ଜାଣି ନଥିଲା। ଅଧେ ଦିନ ତା ମା'ର ଦେହ ଖରାପ। ଏପରି ଖରାପ ହୁଏ ଯେ ସେ ଘରଦ୍ୱାର ପିଲାଛୁଆ କିଛି ଜାଣିପାରେ ନାହିଁ। ଭାଇଭଉଣୀ ବାପାଙ୍କ ସ୍ନେହ ଶ୍ରଦ୍ଧାରେ ବଢ଼ିବାକୁ ଲାଗିଲେ। ନୀଳାଦ୍ରି ନାଥ ବାବୁ ପୁଅ ଝିଅଙ୍କୁ ବହୁତ ଭଲ ପା'ନ୍ତି। ଦିନେ ନ ଦେଖିଲେ ସେ କହନ୍ତି—ହର ପ୍ରସନ୍ନ, ସୁବ ମୋର ଦୁଇ ଆଖି।

ସୁବର କାଲି ପରି ଅନେକ କଥା ମନେପଡ଼େ। ଯେତେବେଳେ ବଡ ଭାଇ ତା'ର ମାଟ୍ରିକ୍ ପଢୁଥିଲେ, ବସନ୍ତ ପଞ୍ଚମୀ ହୋଇଥାଏ। ସାଙ୍ଗମାନେ ମିଶି କମ୍ପିଟେସନ କରି ପୁରି ଖାଇଲେ। ସମସ୍ତଙ୍କଠାରୁ ହର ପ୍ରସନ୍ନଭାଇନା ବେଶି ଖାଇଲେ। ରାତିକି ତାଙ୍କର ହେଲା ଭୀଷଣ ବାନ୍ତି। ପେଟ ବହୁତ ଟାଣିଲା। ସେ ପିଉସାଙ୍କ ପାଖକୁ ଖବର ଦେଲେ। ପିଉସା ହଷ୍ଟେଲ ଯାଇ ତାଙ୍କୁ ନେଇ ଆସିଲେ ଘରକୁ। ଯେତେ ଔଷଧପତ୍ର ଖାଇଲେ ବି ପେଟ ଟଣା କମିଲା ନାହିଁ। ଭିଣେଇ ତା'ର ଡାକ୍ତର ଥା'ନ୍ତି ମେଡ଼ିକାଲ୍‌ରେ କ୍ୱାଟର୍ସ ପାଇ। ପିଉସା ତାଙ୍କ ପାଖକୁ ଖବରଦେଲେ ସେ ଦେଖି କହିଲେ ଚବିଶ ଘଣ୍ଟା ଭିତରେ ଅପରେସନ୍ କରିବାକୁ ହେବ। ପିଉସା ରାତାରାତି ଖବର ପଠାଇଲେ ଗାଁ'କୁ। ଗାଁରେ ଖବର ପାଇ ବାପା, ବୋଉକୁ କିଛି ନ କହି

କଚରିରେ ଜରୁରୀ କାମ ଅଛି କହି କଟକ ପଳାଇଆସିଲେ। ସେ କଟକରେ ପହଞ୍ଚିଲା ବେଳକୁ ରାତି ୯/୧୦ ଟା ହୋଇଗଲା।

ସେତେବେଳେ କଟକରେ ସିଭିଲ୍ ସର୍ଜନ ଥା'ନ୍ତି ଡ.କାଶୀନାଥ ମିଶ୍ର। ତା ଆରଦିନ ସେ ଅପରେସନ୍ କଲେ। ବାପା ଭାଇନାଙ୍କ ପାଖରେ ରହନ୍ତି, ଝିଆରୀ ଘରେ ଖାଆନ୍ତି।

ଦିନେ ସେ ଝିଆରୀ ଘରେ ଖାଇପିଇ ଡାକ୍ତରଖାନାରେ ପହଞ୍ଚିଲା ବେଳକୁ ନର୍ସ ତାଙ୍କୁ କହିଦେଲା ତୁମ ପୁଅର ଅବସ୍ଥା ଖରାପ। ସଙ୍ଗେ ସଙ୍ଗେ ଝିଆରୀ ଘରକୁ ଯାଇ ଜୋଇଁଙ୍କ ଆଗରେ ସବୁ କଥା କହିଲେ। ଜୋଇଁ ତାଙ୍କର ଡାକ୍ତର। ସେ ସବୁ ଶୁଣି କାଶୀବାବୁଙ୍କ ଘରକୁ ଯାଇ ସବୁ କଥା କହିଲେ। ବାପା ମୋର କାନ୍ଦୁଥାନ୍ତି ପୁଅ ପାଇଁ। କାଶୀବାବୁ କହିଲେ–"ମୁଁ ଏବେ ଯାଇଥିଲି ଦେଖିଆସିଛି ସେ ଖୁବ୍ ଭଲ ଅଛି।" କିନ୍ତୁ, ବାପାଙ୍କ ବ୍ୟସ୍ତତା ଦେଖି ସମସ୍ତେ ମିଶି ଡାକ୍ତରଖାନା ଗଲେ। ସମସ୍ତେ ପହଞ୍ଚିଲାବେଳକୁ ଭାଇନା ଶୋଇଥା'ନ୍ତି। କାଶୀବାବୁ ସବୁ ପରୀକ୍ଷା କରି କହିଲେ– କିଏ କହିଲା ତା ଅବସ୍ଥା ଖରାପ ଅଛି ବୋଲି ? ବାପା ସେ ନର୍ସକୁ ଦେଖାଇ ଦେଲେ। ଯେଉଁ ନର୍ସ ଏକଥା କହିଥିଲା, କାଶୀବାବୁ ତାକୁ ବହୁତ ଗାଳି ଦେଲେ। ଭାଇନା ଭଲ ହୋଇ ଗାଁକୁ ଆସିଲେ।

ସମୟ ଯେପରି କାହାକୁ ଅପେକ୍ଷା କରେନା। ଦିନପରେ ଦିନ ଗଡ଼ିଚାଲେ। ସେହିପରି ସୁବର ବୟସ ହୋଇଗଲା ବିବାହ ହବା ଲାଗି। ନୀଳାଦ୍ରି ନାଥ ବାବୁ ଚାରିଆଡେ ଖୋଜିଲେ ଝିଅପାଇଁ ପ୍ରସ୍ତାବ। ମାତ୍ର ଯେଉଁଠି ପକାଇଲେ କେଉଁଠି ଘର ଭଲ ତ ପିଲା ଭଲ ନୁହେଁ। ତାଙ୍କର ମନ କେଉଁଠି ମାନେ ନାହିଁ। ଆଗ ସମୟରେ ଭଲ ବ୍ରାହ୍ମଣ ଦେଖି ବାହା ଦେଉଥିଲେ। ଝିଅଙ୍କୁ ଛୋଟ ବ୍ରାହ୍ମଣ ଘରେ ଦଉ ନ ଥିଲେ। ସେହିପରି ଝିଅ ପାଇଁ ନାନା ଦ୍ୱନ୍ଦ୍ୱରେ ପଡି ନୀଳାଦ୍ରି ନାଥ ବାବୁ ବଡ ବ୍ୟସ୍ତ ହୋଇ ପଡୁଥିଲେ। ବହୁତ ଖୋଜାଖୋଜି କରି ସେ କେନ୍ଦ୍ରାପଡାର ବନ୍ତାରପୁରର ପଣ୍ଡିତଙ୍କ ଘର ଠିକ୍ କଲେ। ତାହା ଥିଲା ଏକ ମଧ୍ୟବିତ୍ତ ପରିବାର। ପିଲା ଗଞ୍ଜାମ କଲେଜରେ ଅଧ୍ୟାପକ। ସେତେବେଳେ ଅଧ୍ୟାପକ ଚାକିରି ସବୁଠାରୁ ବଡ ଚାକିରି। ନୀଳାଦ୍ରି ନାଥ ବାବୁ ଆଉ କିଛି ନ ଭାବି ସେଇଠି ଜବାବ୍ ଦେଲେ।

ସୁବର ବିଭାଘର ଭଲରେ ସମ୍ପନ୍ନ ହେଲା। ସେତେବେଳକୁ ପୁଅ ତାଙ୍କର ରେଭେନ୍ସା କଲେଜରେ ପଢୁଥାନ୍ତି। ସେ ଭଉଣୀ ବାହାଘରରେ ବ୍ୟସ୍ତ ରହି ଆଇ.ଏସ୍‌ସି.ରେ ପାସ୍ କଲେ ମଧ ଭଲ ନମ୍ବର ରଖିପାରିଲେ ନାହିଁ।

ବାହାଘରେ ସୁବର ମାମୁଁଘର ବହୁତ ଭାର ବେଭାର ଦେଲେ ଏବଂ ନିଜେ ତା'ର ସାନ ମାମୁଁ ଆଠଦିନ ଆଗରୁ ଆସି ବୁଝାସୁଝା କଲେ।

ଝିଅ ବାହାଘର ପରେ ସୁବ ବୋଉଙ୍କ ଦେହ ଖରାପ ହେଲା। ନୀଳାଦ୍ରି ନାଥ ବାବୁ ବ୍ୟସ୍ତ ହୋଇପଡ଼ିଲେ ଝିଅକୁ କିପରି ଶାଶୁଘରକୁ ପଠାଇବେ। କାରଣ ପୁଅଟିକୁ ୧୦ ମାସ ହୋଇଥାଏ। ତା କଥା ସବୁ ଝିଅ ତାଙ୍କର ବୁଝୁଥିଲା। ସେ କିପରି ଚଳିବେ? ମନେ ମନେ କାନ୍ଦି ପକାଉଥିଲେ ନୀଳାଦ୍ରି ନାଥ ବାବୁ ସେ ଚିନ୍ତାରେ ବ୍ୟସ୍ତ ହୋଇପଡୁଥିଲେ। ସୁବର ମନ କେଉଁଠି ଲାଗୁ ନଥାଏ। କିପରି ସେ ଭାଇକି ତା'ର ଛାଡ଼ିକରି ଯିବ। ସେ ଖାଲି କାନ୍ଦୁଥାଏ। ଯାହାହେଉ ସବୁ ଯୋଗାଡ କରି ସାତଦିନ ପରେ ନୀଳାଦ୍ରି ନାଥ ବାବୁ ସୁବକୁ ଶାଶୁଘରକୁ ପଠାଇଲେ। ସାଙ୍ଗରେ ଛାମୁକରଣ ବଡ ଭାଇ ଏବଂ ପୁଅକୁ ପଠାଇଲେ। ନୀଳାଦ୍ରି ନାଥ ବାବୁ ଝିଅକୁ ସବାରିରେ ପଠାଇବାର ବନ୍ଦୋବସ୍ତ କରିଥା'ନ୍ତି। ବହୁକୁଦ (ବହୁଗ୍ରାମ) ପର୍ଯ୍ୟନ୍ତ। କିନ୍ତୁ ଗୋପାଳମାନେ ନ ଆସିବାରୁ ଶଗଡ଼ ଗାଡ଼ିରେ ପଠାଇଲେ। ସୁବର ଖୁଡୁତାଶୁର ଡାକ୍ତର। ସେ ଆସିଥାନ୍ତି ନବାପାଇଁ। ନୀଳାଦ୍ରି ନାଥ ବାବୁ ଭାରବେଭାର ଏବଂ ସୁନା ରୁପା କେଉଁଥିରେ ଊଣା କରି ନଥିଲେ ଦବାକୁ। ଝିଅ ତାଙ୍କର ଶଗଡ଼ ଗାଡ଼ିରେ ଗଲା। ସେଇଟା ତାଙ୍କୁ ବହୁତ ବାଧିଲା। ସେହି ଦିନରୁ ନୀଳାଦ୍ରି ନାଥ ବାବୁ ସବାରିରେ ବସନ୍ତି ନାହିଁ।

ସୁବ ଯେତେବେଳେ ଶାଶୁଘରକୁ ଗଲା ବାପା ତା'ର କାନ୍ଦି କାନ୍ଦି ଅଧୈର୍ଯ୍ୟ ହୋଇପଡୁଥାନ୍ତି। ତା' ବୋଉର ଜ୍ଞାନ ନ ଥାଏ।

ସୁବ ତା ବାପା, ବୋଉ ଓ ସାନଭାଇଟିକୁ କିପରି ଛାଡ଼ିକରି ଯିବ ସେ ଭାବନାରେ ତା ଆଖିରୁ ଧାରା ଶ୍ରାବଣ ପରି ଲୁହ ଗଡି ପଡୁଥାଏ।

ନାନା ଝମିଲାରେ ସୁବ ଶାଶୁ ଘରକୁ ଗଲା।

ତା'ର ବଡ ବାପା ଭାଇ ଶାଶୁଘରେ ସୁବକୁ ଛାଡି ଗାଁକୁ ଫେରିଲେ।

ନୀଳାଦ୍ରି ନାଥ ବାବୁ ଭାବନ୍ତି କିପରି ମୋ ଝିଅ ଏଡ଼େ ବଡ କୁଟୁମ୍ବରେ ଚଳିବ। ଭାତରେ ଦୁଧ ନ ପକାଇଲେ ସେ ଖାଏନି। କିପରି ଛାଡି ମୁଁ ରହିବି ସୁବକୁ। ମନ ତାଙ୍କର ଝିଅଲାଗି ଉହଳ ବିକଳ ହୋଇଯାଏ।

ସୁବକୁ ତା ଶ୍ୱଶୁର ଖୁଡୁତାଶୁରମାନେ ବହୁତ ଭଲ ପାଆନ୍ତି। ଯେତିକି ଦିନ ରହିଲେ ମଧ୍ୟ ସୁବ ଶାଶୁଘରେ ରନ୍ଧାବଢ଼ା ସବୁକାମ କରେ। ଦିଅରମାନେ ସେତେବେଳକୁ ଛୋଟ ଛୋଟ। ପାଖ ଛାଡନ୍ତିନି ଭାଉଜର। ସାନ ଖୁଡୁତାଶୁର ଡାକ୍ତରଖାନାରୁ ଆସିଲେ ବୋହୂ ପାଇଁ ମିଠା ଆଣି ଆସନ୍ତି ଓ ମିଠାକୁ

ଲୁଚାଇ କରି ରଖନ୍ତି। ସମସ୍ତେ ଖାଇସାରି ଗଲେ ସେ ବୋହୂକୁ ପାଖରେ ବସାଇ ଖୁଆନ୍ତି। ବୋହୂକୁ ଝିଅଠାରୁ ବଳି ଭଲ ପା'ନ୍ତି ସେ।

ଶାଶୁ ଘରକୁ ଯିବାର ୭/୮ ଦିନ ପରେ ସୁବ ଗଲା ତା ସ୍ୱାମୀ ଯେଉଁଠି ଚାକିରି କରିଥିଲେ ସେହିଠିକୁ। ୩/୪ ମାସ ପରେ ସୁବକୁ ଭଲ ଲାଗିଲା ନାହିଁ। ଭାଇପାଇଁ ସେ ତା ବାପାଙ୍କ ପାଖକୁ ଚିଠି ଲେଖିଲା। ତା ଦେହ ଭଲ ନାହିଁ। ନୀଳାଦ୍ରି ନାଥ ବାବୁ ଯାଇ ଝିଅକୁ ନେଇଆସିଲେ ଘରକୁ। ସୁବ ବର୍ଷେ ରହିଲା, ତାର ସେଠି ଗୋଟିଏ ଝିଅ ହେଲା। ଏକୋଇଶିଆ ବଡ ଆଡମ୍ବରରେ କଲେ, ନୀଳାଦ୍ରି ନାଥ ବାବୁ। ସୁବ ଶାଶୁଘରକୁ ଖବର ଦେଲେ; କିନ୍ତୁ କେହି ଆସିଲେ ନାହିଁ। ସେଥିପାଇଁ ତାଙ୍କ ମନ ବହୁତ ଦୁଃଖ ହେଲା।

ସୁବର ଝିଅ ହୋଇସାରିଲା ପରେ ତା ଦେହ ଭଲ ରହିଲା ନାହିଁ। ସବୁବେଳେ ପେଟ କ'ଣ ହୁଏ। କିଛି ଖାଇପାରେ ନାହିଁ ସେ। ସେଥିପାଇଁ ନୀଳାଦ୍ରି ନାଥ ବାବୁ ଝିଅକୁ ପଠେଇଲେ ନାହିଁ ଜୋଇଁଙ୍କ ପାଖକୁ। ଦେହ ଟିକେ ଭଲ ହେଲେ ଝିଅ ଓ ନାତୁଣୀକୁ ନିଜେ ନେଇ ଛାଡିଆସିବେ।

ଦିନେ ଜୋଇଁ ଆସିଲେ ଝିଅକୁ ଦେଖିବାକୁ। ଜଗୌକା ପାହାଡ଼କୁ ବୁଲିଗଲେ। ସେଠାରେ ଗୋଡ ଖସି ଗଲାରୁ ସେ ଆଣ୍ଠେଇ ପଡ଼ିଲେ। ଘରେ ଆସି ପହଞ୍ଚି ଆଉ ଚାଲି ପାରିଲେ ନାହିଁ। ଆଣ୍ଠୁଗଣ୍ଠି ଧରି ପକାଇଲା। ନୀଳାଦ୍ରି ନାଥ ବାବୁ ଝିଅକୁ କ'ଣ ପଠେଇବେ? ଝିଆରୀ ଜୋଇଁ ଡାକ୍ତର। ଜୋଇଁକୁ ତାଙ୍କ ପାଖକୁ ନେଇଗଲେ। ସୁବ ମଧ କଟକ ଆସିଲା। ବହୁତ କଷ୍ଟରେ ଭଲ ହେବାରୁ ଜୋଇଁ କାମରେ ଯୋଗଦେଲେ। ନୀଳାଦ୍ରି ନାଥ ବାବୁ ଝିଅ ଓ ନାତୁଣୀକୁ କିଛି ଦିନ ପରେ ତା ଶାଶୁଘରେ ଛାଡ଼ିଲେ। ଝିଅ ପାଇଁ ସେ ସବୁବେଳେ ଚିନ୍ତା କରୁଥିଲେ। ତା'ର ଖାଇବାଠାରୁ ପିନ୍ଧିବା ପର୍ଯ୍ୟନ୍ତ ତାଙ୍କ ଶକ୍ତି ଅନୁସାରେ ଯୋଗାଉଥିଲେ। ସେ ଝିଅକୁ ବୁଝାନ୍ତି ଯାହା ଦରକାର ମତେ କହିବୁ। ଜୋଇଁଙ୍କର ଅଳ୍ପ ଦରମା। ଏତେଗୁଡ଼ିଏ ଲୋକଙ୍କୁ ପାଖରେ ରଖିଛନ୍ତି, ତାଙ୍କୁ କିଛି କହିବୁ ନାହିଁ। ସୁବର ଝିଅକୁ ଦୁଇ ବର୍ଷ ହୋଇଥିବାବେଳେ ନୀଳାଦ୍ରି ନାଥ ବାବୁଙ୍କର ଆଉ ଗୋଟିଏ ପୁଅ ହେଲା। ତାକୁ ଡାକିଲେ ଟୁନୁ।

ନୀଳାଦ୍ରି ନାଥ ବାବୁଙ୍କର ବଡ ପୁଅ ବି.ଏସ୍.ସି ପାସ୍ କରି ଏମ୍.ଏସ୍.ସି କଲିକତାରେ ପଢ଼ିଲା। ସେତେବେଳକୁ ସୁବର ଆଉ ଗୋଟିଏ ଝିଅ ହେଲା। ସୁବ ଥାଏ ବାପଘରେ।

ଦିନକୁ ଦିନ ସୁବ-ବୋଉଙ୍କର ଦେହ ଖରାପ ହେଲା। ସେ ପିଲାଙ୍କର କି ଘରର ଯତ୍ନ ନେଇ ପାରିଲେ ନାହିଁ। କମଳିନୀ ବହୁତ ବୁଢ଼ୀ ହୋଇଥିବାରୁ ଘରର ଜଞ୍ଜାଳ ଅତି କଷ୍ଟରେ କରନ୍ତି। ସୁବ ତାଙ୍କୁ କାମରେ ସାହାଯ୍ୟ କରେ। ଚାକର ପୂଝାରୀ କଥା କହିଲେ ନ ସରେ। ଜମିଦାରୀ ଗଲାପରେ କିଏ କାହାକୁ ପଚାରୁଛି। ନାନା ଅସୁବିଧାରେ ପଡ଼ିବାରୁ ନୀଳାଦ୍ରି ନାଥ ବାବୁ ପୁଅକୁ ବିବାହ ଦେବା ଲାଗି ସ୍ଥିର କଲେ।

ଭଉଣୀ ଭିଣେଇ ଥା'ନ୍ତି କଟକରେ। ନୀଳାଦ୍ରି ନାଥ ବାବୁ ମଝିରେ ମଝିରେ କଟକ ଆସି ଭଉଣୀ ଭିଣେଇଙ୍କୁ ସବୁକଥା କହନ୍ତି। କିନ୍ତୁ ପୁଅ ତାଙ୍କର ରାଜି ହଉ ନ ଥାଏ ବାହା ହବାକୁ। ନୀଳାଦ୍ରି ନାଥ ବାବୁ ପୁଅକୁ ବୁଝାବୁଝି କରି ରାଜି କରାଇଲେ। ବହୁତ କନ୍ୟା ଖୋଜି ଖୋଜି ପରେ ଭିଙ୍ଗାରପୁର ଚୌଧୁରୀ ଘରେ ପ୍ରସ୍ତାବ ଆଗେଇଲା। ନୀଳାଦ୍ରି ନାଥ ବାବୁ ଓ ତାଙ୍କ ଭିଣେଇ ଗଲେ ଝିଅ ଦେଖିବାକୁ। ମୁହଁ ଦେଖିବେ କ'ଣ ଝିଅର ପାଦ ଦେଖି ନୀଳାଦ୍ରି ନାଥ ବାବୁ ତାକୁ ମୁଦି ପିନ୍ଧାଇ ଦେଇ ଆସିଲେ।

ଭଲରେ ବାହାଘର କାମ ସରିଲା। ବୋହୂଟିର ନାଁ ଅନୁ।

ନୀଳାଦ୍ରି ନାଥ ବାବୁ ପୁଅ ବୋହୂଙ୍କୁ ନେଇ ଘରକୁ ଆସିଲେ। ସବୁ କାମ ସୁରୁଖୁରୁରେ ହେଲା।

....ସେ ଝିଅ ଓ ନାତୁଣୀକୁ ନେଇ ଜୋଇଁଙ୍କ ପାଖରେ ଛାଡିଆସିଲେ। ଜୋଇଁ ତାଙ୍କର ସେତେବେଳେ ପାରଳାଖେମୁଣ୍ଡି କଲେଜରେ ଅଧ୍ୟାପକ ଥା'ନ୍ତି।

ବୋହୂ ଆସିଲା ପରେ ରନ୍ଧାବଢ଼ା ଘର କାମରେ ସାହାଯ୍ୟ କଲେ।

ସୁବ-ବୋଉ ବୋହୂକୁ ଝିଅଠାରୁ ବଳି ଭଲପା'ନ୍ତି।

ନୀଳାଦ୍ରି ନାଥ ବାବୁଙ୍କ ମନ ଖୁସିଥାଏ ପୁଅ ତାଙ୍କର ଭଲରେ ଏମ୍.ଏସ୍‌ସି. ପାସ୍ କଲା। ତା' ପରେ ବାରଙ୍ଗ କାଚକାରଖାନାରେ ସେ ଚାକିରି ପାଇଲେ। ଦୁଇ ମାସ ପରେ ପୁଅ ତାଙ୍କର ସିନ୍ଦ୍ରିରେ ଚାକିରି ପାଇଲେ। ସେ ବୋହୂକୁ ନେଇ ପୁଅ ପାଖରେ ଛାଡିଆସିଲେ। ବର୍ଷକ ପରେ ତାଙ୍କ ପୁଅର ପୁଅଟିଏ ହେଲା। ତା ନାଁ ଅତି ଗେହ୍ଲାରେ ଦେଲେ ବାବୁ।

ସୁବର ମନେପଡ଼େ ତାର ଭାଇ-ଭାଉଜଙ୍କ କଥା। ଯେତେବେଳେ ହର ପ୍ରସନ୍ନ ଭାଇନାଙ୍କର ଠିକ୍ ହେଲା ଉଚ୍ଚଶିକ୍ଷା ପାଇଁ ସେ ଜର୍ମାନ ଯିବେ ୩ ବର୍ଷ ପାଇଁ। ସେ ପିଲାମାନଙ୍କୁ ଧରି ଘରକୁ ଆସିଲେ। ନୂଆବୋଉ ଓ ପୁଅ ଘରେ ରହିଲେ।

କିନ୍ତୁ ବାପା ବୋଉଙ୍କର ମନ ଭଲ ନ ଥାଏ ଭାଇନା ପାଇଁ। ସେତେବେଳକୁ ସୁବ ଥାଏ ପୁରୀରେ। ବାପା ଥରେ ମଝିରେ ପୁରୀ ଯାଇ ଝିଅ ଆଗରେ ବ୍ୟସ୍ତ ହେଲେ। ସୁବ ବୁଝାଇ କହିଲା ବାପାଙ୍କୁ ଭାଇନା ଜର୍ମାନ ଯାଇ ବଡ ଇଞ୍ଜିନିୟର୍ ହେବେ। ବହୁତ ପଇସା ରୋଜଗାର କରିବେ। ତୁମେ ଖୁସିହବା କଥା ଦୁଃଖ କାହିଁକି କରୁଛ ?

ନୀଳାଦ୍ରି ନାଥ ବାବୁ ଝିଅ ଉପରକୁ ଚିଡ଼ିଉଠି କହିଲେ ଆଲୋ ମା ତୁ ମୋ ମନକଥା କ'ଣ ବୁଝିବୁ ? ହର ପ୍ରସନ୍ନ ଭାଇନା ଜର୍ମାନ ଗଲାବେଳକୁ ମୁଁ ନାନା ଅସୁବିଧା ନେଇ ଘରକୁ ଆସିପାରିଲି ନାହିଁ। କିନ୍ତୁ ମୁଁ ଶୁଣିଲି ଯେ ହର ପ୍ରସନ୍ନଭାଇନା ଜର୍ମାନ ଗଲାବେଳକୁ ବାପା କଟକ ଷ୍ଟେସନ୍‌କୁ ଯାଇଥାନ୍ତି, ଛାଡ଼ିବାକୁ। ସେ ଅଧୈର୍ଯ୍ୟ ହୋଇପଡୁଥାନ୍ତି। ଆଖିରୁ ତାଙ୍କର ଗଡିପଡୁଥାଏ ଲୁହ। ବନ୍ଧୁବାନ୍ଧବ ସମସ୍ତେ ବୁଝାବୁଝି କରି ତାକୁ ଘରକୁ ଆଣିଲେ।

ସେ ନିଜ ପୁଅ ପାଇଁ ସର୍ବଦା ଚିନ୍ତାରେ ଥା'ନ୍ତି। ତିନିବର୍ଷ ତାଙ୍କୁ ଲାଗୁଥାଏ ୩ ଯୁଗ ପରି। ପୁଅର ଚିଠି ପାଇଲେ ସେ ଆଶ୍ୱସ୍ତ ହୁଅନ୍ତି। ବୋହୂ ଓ ନାତି ପାଖରେ ଥା'ନ୍ତି। ସେ ଜର୍ମାନରେ ପହଞ୍ଚି ଘରକୁ ଚିଠି ଦେଲେ। ଚିଠି ପାଇ ଘରେ ସମସ୍ତେ ଆଶ୍ୱସ୍ତ ହେଲେ।

ଜର୍ମାନରୁ କେହି ଜଣାଶୁଣା ଓଡ଼ିଶା ଆସିଲେ ସେ ସାଧାରଣ ଜିନିଷ ଭାଣିଜୀ ମାନଙ୍କ ପାଇଁ ପଠାନ୍ତି। ତା ଭିତରେ ତାଙ୍କର ଆଉ ଗୋଟିଏ ପୁଅ ହେଲା। ସମୟ କାହାକୁ ଅପେକ୍ଷା କରିନଥାଏ। ଦିନ, ମାସ, ବର୍ଷ ଯେପରି ଗଡ଼ିଗଡ଼ି ଚାଲିଯାଏ, ସେହିପରି ହର ପ୍ରସନ୍ନଭାଇନାଙ୍କର ତିନି ବର୍ଷ ଜର୍ମାନ ଯିବା ସରି ଆସିଲା।

ନୀଳାଦ୍ରି ନାଥ ବାବୁ, ସୁବ ବୋଉ ଦିନ ଗଣୁଥାନ୍ତି। ପୁଅ ତାଙ୍କର କେବେ ଘରକୁ ଆସିବ।

ହଠାତ୍ ନୀଳାଦ୍ରି ନାଥ ବାବୁ ଚିଠି ପାଇଲେ ଯେ ପୁଅ ତାଙ୍କର କୃତିତ୍ୱର ସହ ପାସ୍ କରିଛି। ସେଦିନ ଘରେ ସମସ୍ତଙ୍କ ମନଖୁସି ଦେଖିବ କ'ଣ ?

ସୁବ ଥାଏ ପୁରୀରେ। ନୀଳାଦ୍ରି ନାଥ ବାବୁ ଯାଇ ପୁରୀରେ ପହଞ୍ଚିଲେ ଝିଅ ପାଖରେ। ସୁବ ପଚାରିଲା– ବାପା, କୁଆଡେ ଆସିଲ ?

ନୀଳାଦ୍ରି ନାଥ ବାବୁ–ମୁଁ ଦେଉଳରୁ ଆସେ।

ସୁବ–ଏତେ ବାଟରୁ ଆସିଛ। ଗୋଡହାତ ଧୁଅ। ଜଳଖିଆ ଖାଇ ଦେଉଳକୁ ଯିବ। ସେ ଅତି ଖୁସିରେ କାନ୍ଦି ପକାଉଥାନ୍ତି।

ସୁବ ପଚାରିଲା– ଭାଇନା କେବେ ଆସୁଛନ୍ତି ଚିଠି ପାଇଛ ? ସେ ହସି ଦେଇ କହିଲେ। ଯାହା ହେଉ ମୋ ପୁଅ ଭଲରେ ପାସ୍ କଲା। ଆଉ ମାସେ ଖଣ୍ଡେ ପରେ ଆସିବ। ଏତକ କହି ସେ ଜଗନ୍ନାଥ ଦର୍ଶନ କରିବାକୁ ଚାଲିଗଲେ।

ସେଦିନ ବାପ ଝିଅ ଗପସପ କରି ଶୋଇଲାବେଳକୁ ରାତି ଦୁଇଟା ହୋଇଗଲା। ତା ଆରଦିନ ସୁବ ଗେଲରେ ପଚାରିଲା ବାପା ଭାଇନା ଆସିଲେ ବଡ଼ ଇଞ୍ଜିନିୟର ହେବେ, ବହୁତ ପଇସା ପାଇବେ ତୁମର ଦୁଃଖ କ'ଣ ?

ନୀଳାଦ୍ରି ନାଥ ବାବୁ ହସି ହସି କହିଲେ। ସେ ଘରେ ପହଞ୍ଚୁ ତା'ପରେ ଯାହା ଆମ ଭାଗ୍ୟରେ ଥିବ। ଦୁଇତିନି ଦିନ ରହି ସେ ଗାଁକୁ ଗଲେ ଏବଂ ଗଲାବେଳେ ଝିଅକୁ କହିଲେ ମୁଁ ଅପେକ୍ଷା କରିଛି ହର ପ୍ରସନ୍ନକୁ। ସେ ଆସିଲେ ପିଲା ଦୁଇଜଣଙ୍କୁ ବ୍ରତ କରିବି।

ମାସେ ଖଣ୍ଡେ ପରେ ହର ପ୍ରସନ୍ନ ଭାଇନା ଗାଁରେ ପହଞ୍ଚିଛନ୍ତି ସୁବ ଜାଣିନି। ସେ କୁନୁ, ଟୁନୁଙ୍କ ବ୍ରତ ଘର ପାଇଁ ଭଉଣୀକୁ ନବାକୁ ପୁରୀ ଆସିଲେ। ସେ ତାଙ୍କ ଭିଣେଇ ସାଙ୍ଗରେ କଥାବାର୍ତ୍ତା ହଉଥା'ନ୍ତି ସୁବ ଜାଣିପାରିଲା ନାହିଁ। ସେମାନେ ମଧ୍ୟ କିଛି କହୁ ନ ଥାନ୍ତି।

ହର ପ୍ରସନ୍ନ ଭାଇନା ଆଗରୁ ପତଳା ଥିଲେ। ଜର୍ମାନରେ ତାଙ୍କର ସ୍ୱାସ୍ଥ୍ୟ ଭଲ ହୋଇ ଯାଇଥାଏ। ସେଥିପାଇଁ ସୁବ ଚିହ୍ନି ପାରୁନଥାଏ।

କେତେ ସମୟ ପରେ ମୋତେ କହିଲେ ତୁମ ଭାଇନା ଆସିଛନ୍ତି କ'ଣ ଚିହ୍ନି ପାରୁନା ?

ସୁବ ଆବାକାବା ପରି ଚାହିଁଥାଏ। ଚାହିଁଛ କ'ଣ ସତରେ ତୁମ ଭାଇନା ଆସିଛନ୍ତି।

ସୁବ ତାଙ୍କ କଥାକୁ ବିଶ୍ୱାସ ନ କରି କହିଲା ମିଛ କଥା। ଆନନ୍ଦରେ ସୁବର ଗୋଡ଼ ତଳେ ଲାଗିଲା ନାହିଁ। ସେ ତର ତର କରି ଯାଇ ଭାଇର ଗୋଡ଼ତଳେ ପଡ଼ିଲା ଏବଂ କହିଲା ତୁମେ କେତେବେଳୁ ଆସିଲଣି ମୋତେ କହୁ ନ ଥିଲ କାହିଁକି ?

ହର ପ୍ରସନ୍ନ ଭାଇନା ହସି ଦେଇ କହିଲେ ତୁ ମୋତେ ଚିହ୍ନି ପାରୁଛୁ କି ନାହିଁ ଆମେ ପରୀକ୍ଷା କରୁଥିଲୁ। ଖିଆପିଆ ସରିଲା। ଭାଇ ଭଉଣୀ ବହୁତ ସମୟ ଗପ ସପ କଲେ।

ହର ପ୍ରସନ୍ନ ଭାଇନା କହିଲେ କୁନୁ ଟୁନୁଙ୍କ ବ୍ରତଘର। ମୁଁ ଆସିଛି ତୁମକୁ ନବାକୁ। ସମସ୍ତେ ଗଲୁ। ଭଲରେ କୁନୁ ଟୁନୁଙ୍କ ବ୍ରତଘର ସରିଲା।

ସେ ସଙ୍ଗେ ସଙ୍ଗେ କଲିକତାରେ ଚାକିରି ପାଇଲେ। ସେ ତାଙ୍କ ପିଲାମାନଙ୍କୁ ନେଇ କଲିକତା ଗଲେ। ନୀଳାଦ୍ରି ନାଥ ବାବୁ ଆଉ ସୁବ ବୋଉ ପୁଅ ପାଖକୁ ଯାଇ ପାରନ୍ତି ନାହିଁ; କାରଣ ମା ତାଙ୍କର ବହୁତ ବୁଢୀ। ପୁଅ ଦି'ଜଣ ପାଠ ପଢୁଥାନ୍ତି।

ଜମିଦାରୀ ଗଲାପରେ ନୀଳାଦ୍ରି ନାଥ ବାବୁ ଅର୍ଥ ଅଭାବରେ ବଡ ବ୍ୟସ୍ତ ହୋଇପଡୁଥିଲେ। ଦିନକୁ ଦିନ ଅଭାବରେ ପଡ଼ି ଚିଡ଼ିଚିଡ଼ା ହୋଇଗଲେ।

ସୁବ ବୋଉ ଯେତେ କହନ୍ତି ପଇସା ପତ୍ର ନାହିଁ ଚଳିବାକୁ, ପୁଅ ପାଖକୁ ଲେଖ ମେ଼ କିଛି ପଠାଇବ।

ନୀଳାଦ୍ରି ନାଥ ବାବୁ ଆଖି ଛଳ ଛଳ କରି ନୀରବ ରୁହନ୍ତି। ସେ ଅଭିମାନରେ ପୁଅକୁ ପଇସା କଥା ଲେଖନ୍ତି ନାହିଁ। ଶେଷକୁ ବାଧ ହୋଇ ଘର ଭିତରେ ଲୁଗା ଦୋକାନ କଲେ। ସେଥିରେ ଯାହା ହୁଏ ଯଥା କଥା ଚଳିଯା'ନ୍ତି।

ମାସେ ଦୁଇମାସହେବ ସୁବ ତା ବାପାଙ୍କ ପାଖରୁ ଚିଠିପତ୍ର ନ ପାଇ ବଡ ବ୍ୟସ୍ତରେ ଥାଏ। ତା'ର ମନ ଭଲ ନଥାଏ।..ସୁବ ହଠାତ୍ ଦିନେ ଚିଠି ଖଣ୍ଡେ ପାଇଲା। ଜେଜେ ମାର ଦେହ ବହୁତ ଖରାପ। ସେ କାହାକୁ କିଛି ନ କହି ମନରେ ଭାବୁଥାଏ କେମିତି ଘରକୁ ଯାଇ ମା'କୁ ଟିକେ ଦେଖନ୍ତା।

ସୁବ ନାନା ଅସୁବିଧା ନେଇ ଯାଇପାରିଲା ନାହିଁ ତା'ର ଜେଜେମାଙ୍କୁ ଦେଖିବାକୁ।.....

.....ଦିନଯାକ ପିଲାଙ୍କର ଏବଂ ଘରର ଯାବତୀୟ ଜଞ୍ଜାଳ ସାରି ସେ ରାତିରେ ଶୋଇଲା। ମା ଦୁଃଖ କଥା ମନେପଡି ସୁବର ଆଖି କୋଣରେ ଲୁହ ଜକେଇ ଆସେ।

କାର୍ତ୍ତିକ ମାସ ବଡ ଦ୍ୱାଦଶୀ। ରାତିରେ ଚାରିଆଡେ ଜହ୍ନ ଆଲୋକର ବିଭା। ସୁବକୁ ରାତିରେ ନିଦ ହେଲା ନାହିଁ। ଜେଜେମା ଲୁଚାଇ କରି ସୁନା ନୋଳି ଦେଇଥିଲା। କେତେ ସେ ମୋତେ ଭଲ ନ ପାଏ! ତା'ର ଖାଲି ମନେପଡିଲା।

ଭୋରୁ ଭୋରୁ ନିଦ ମାଡ଼ିଆସିଲା ବେଳକୁ ଅଶୁଭ ସ୍ୱପ୍ନ ଦେଖିଲା ସୁବ। ନିଦ ତା'ର ଚାଉଁକିନା ଭାଙ୍ଗିଗଲା। ସେ ଭାବିଲା ମା' ମୋର କ'ଣ ଚାଲିଗଲା କି?

ଦିନ ବାରଟାରେ ଡାକପିଅନ୍ ପାଟିକଲା ଟେଲିଗ୍ରାମ୍/ଟେଳିଗ୍ରାମ୍। ଇଏ ନ ଥା'ନ୍ତି କଲେଜ ଯାଇଥା'ନ୍ତି। ସୁବ ତରତର କରି ଦସ୍ତଖତ କରି ଟେଲିଗ୍ରାମ୍ ଖୋଲି ଦେଖିଲା, ବାପା ଟେଲିଗ୍ରାମ୍ କରିଛନ୍ତି - ମା'ଚାଲିଗଲା।

ଜେଜେମା ମରିବା ଶୁଣି ସୁବ ବହୁତ କାନ୍ଦିଲା। ଜେଜେମାର ସବୁ ସ୍ନେହ, ଶ୍ରଦ୍ଧା ତା'ର ମନେପଡ଼ିଲା।

.....ବହୁତ କଷ୍ଟରେ ସୁବ ପିଲାଙ୍କୁ ନେଇ ଜେଜେମାର ଶୁଦ୍ଧ ଘରେ ପହଞ୍ଚି ଦେଖେ, ବାପା ତା'ର ପିଲାଙ୍କ ପରି ବହୁତ କାନ୍ଦୁଛନ୍ତି। ଯେତେ ଯିଏ ବୁଝେଇଲେ ବୁଝୁ ନାହାନ୍ତି। ବାପାଙ୍କର ଅଧୀରତା ସୁବକୁ ଯେପରି ସ୍ତମ୍ଭୀଭୂତ କରିଦେଲା। ସେ ମନେ ମନେ ଭାବିଲା ମା ଦୁଷ୍ଟ ହଉ କି ଯାହା ହଉ ମା' ପରି ଆଉ କେହି ହେବେ ନାହିଁ।

କଥାରେ ଅଛି

"ଜନନୀ ଜନ୍ମଭୂମିଶ୍ଚ
ସ୍ୱର୍ଗାଦପି ଗରିୟସୀ।"

ନୀଳାଦ୍ରି ନାଥ ବାବୁ ଭଲରେ ମା'ର ଶୁଦ୍ଧିକ୍ରିୟା ସମ୍ପନ୍ନ କଲେ।

ସେହି ବର୍ଷ ସୁବର ପୁଅ ହେଲା। ଛଅ ମାସିଆ ପୁଅ ହୋଇଛି। ତା'ର ଦେହ ବହୁତ ଖରାପ ହେଲା ସେ ବଞ୍ଚିବ ନାହିଁ ବୋଲି ସମସ୍ତେ ଆଶା ଛାଡିଦେଲେ।

ସୁବ ପୁଅକୁ ନେଇ କଟକ ଆସିଲା ଭିଣେଇଙ୍କ ପାଖକୁ। ଭିଣେଇ ତା'ର ଡାକ୍ତର। ସେ ବଡ ବ୍ୟସ୍ତ ହୋଇ ହସପିଟାଲରେ ଆଡ୍‌ମିସନ୍ କରିଦେଲେ। ବ୍ଲଡ୍ ଦିଆଗଲା। ନୀଳାଦ୍ରି ନାଥ ବାବୁ ଆଉ ନାତି, ନାତୁଣୀଙ୍କୁ ଗାଁକୁ ନେଇ ଆସିଲେ। ବଡ ନାତୁଣୀ ଦୁଇଜଣ ସେଠି ପାଠ ପଢ଼ିଲେ।

ସୁବ ଥାଏ ଡାକ୍ତରଖାନାରେ। ତା'ର ମନେପଡିଗଲା ଏ ପୁଅ ତା'ର ଯେତେବେଳେ ଜନ୍ମହେଲା ଡାକ୍ତର ଡାକ୍ତରାଣୀ କହିଲେ—ଅପରେସନ୍ ନ କଲେ ମା' ପିଲା ମରିଯିବେ, ବଞ୍ଚିବେ ନାହିଁ। ଅପରେସନ୍ ନ କଲେ ତାଙ୍କ ସ୍ୱାମୀକୁ ଡାକ। ସେ ଆସି ତା' ଅବସ୍ଥା ଦେଖି ଜଗନ୍ନାଥଙ୍କ ପାଦୁକ ପକେଇ ପାଣି ଛଡେଇଦେଲେ। ମୁଁ ଜାଣିନି ଏଇ ପୁଅ ଜନ୍ମ ହେଲା। କେତେ କଷ୍ଟ ନ ପାଇଛି।

ସୁବର ମନ ପୁଅ ଲାଗି ବ୍ୟାକୁଳ ହୋଇଉଠିଲା। ଭିଣେଇ ଡାକ୍ତର। ସେଥିପାଇଁ ସୁବ ଧୈର୍ଯ୍ୟ ଧରିଥାଏ ଡାକ୍ତରଖାନାରେ। ଭିଣେଇ ଡାକ୍ତରଖାନା

କାମ ସରିଲେ ସୁମକୁ ଓ ତା'ର ପୁଅକୁ ତାଙ୍କ ଘରକୁ ନେଇଯା'ନ୍ତି ପୁଣି ରାତିରେ ହସ୍‌ପିଟାଲରେ ଛାଡ଼ିଦିଅନ୍ତି। ନାନୀ ଆମ କଥା ବହୁତ ବୁଝେ।

ଝିଆରୀ, ଭଉଣୀ ସମସ୍ତେ ନୀଳାଦ୍ରି ନାଥବାବୁଙ୍କ ପାଖରେ ସମାନ। ଯେତେବେଳେ କଟକ ଆସିବେ ଝିଆରୀ ପାଇଁ, ଭଉଣୀ ପାଇଁ ଚାଉଳ ଓ ଅନ୍ୟାନ୍ୟ ଜିନିଷ ଆଣନ୍ତି। ଝିଅ ପାଇଁ ନାନୀ ଆଗରେ ବ୍ୟସ୍ତ ହୁଅନ୍ତି। ସେ କହେ ମୁଁ ଅଛି ତୁମେ କାହିଁକି ବ୍ୟସ୍ତ ହଉଛ।

ଭିଣେଇଙ୍କ ଚେଷ୍ଟାରେ ପୁଅଟିକେ ଭଲ ହେଲା। ଡାକ୍ତରମାନେ କହିଲେ ଭୁବନେଶ୍ୱର କେଦଂରଗୌରୀ ପାଖରେ ରହି ସ୍ଥାନ ପରିବର୍ତ୍ତନ କରିବାକୁ।

ସୁବ ତା'ର ସ୍ୱାମୀଙ୍କ ପାଖକୁ ଖବର ଦେବାରୁ। ସେ ଆସିଲେ। ସମସ୍ତେ ଦୁଇ ତିନିମାସ ପାଇଁ କେଦାରଗୌରୀ ପାଖରେ ଘରଭଡା ନେଇ ରହିଲେ। ପୁଅ ଟିକେ ଭଲ ହେବାରୁ ପୁରୀକୁ ଆସିଲେ।

ମାର୍ଗଶିର ମାସ ଗୁରୁବାର। ସୁବର ଝିଅ ଦୁଇଜଣ ସାଙ୍ଗ ହୋଇ ଶୋଇଥା'ନ୍ତି। ପୁରୀ ରଜା ସେଦିନ ଗାଦିରେ ବସୁଥାନ୍ତି। ପୁରୀର ବଡ଼ ଦାଣ୍ଡରେ ବାଜା ରୋଷଣୀ ବାଜୁଥାଏ। ସୁବର ସ୍ୱାମୀ କଟକ ଯାଇଥା'ନ୍ତି ବାହାଘରରେ। ତାଙ୍କ ଘରେ ଚାକରଟିଏ ଥିଲା। ସେ ସାନ ଝିଅଟିକୁ ନେଇ ଚାଲିଗଲା କୁଆଡେ। ବଡ ଝିଅଟି ନିଦରୁ ଉଠି ଡାକ ପକାଇଲା ତା ବୋଉକୁ। ଚାରିଆଡେ ସୁବ ଖୋଜିଲା। ତା ସ୍ୱାମୀଙ୍କ ପାଖକୁ ଖବର ଦିଆଗଲା। ଘରେ କାନ୍ଦବୋବାଳ। ବ୍ରହ୍ମଗିରି ପାଖରୁ ଚାକର ଓ ଝିଅକୁ ଧରିକରି ଅଣାଗଲା।

ବର୍ଷକ ପରେ କଟକର ରେଭେନ୍ସା କଲେଜକୁ ବଦଳି ହୋଇଆସିଲେ ସୁବର ସ୍ୱାମୀ। ସେ ୱେଷ୍ଟ ହଷ୍ଟେଲ ସୁପରିନ୍‌ଟେଣ୍ଡଣ୍ଟ୍ ହୋଇ ରହିଲେ। ତା'ପରେ ହର ପ୍ରସନ୍ନ ଭାଇନାଙ୍କର କଲିକତାରୁ ରାଉରକେଲା ଟ୍ରାନ୍ସଫର ହେଲା। କୁନୁ ଭଲରେ ମାଟ୍ରିକ୍ ପାସ୍ କରି ଭଉଣୀ ପାଖରେ ରହିଲା।

ଝିଅ କଟକରେ ରହିଲାରୁ ନୀଳାଦ୍ରି ନାଥବାବୁ ଆଠ ଦିନରେ ଥରେ କଟକ ଆସନ୍ତି ଏବଂ ଚାଉଳଠାରୁ ଡାଲି ପରିବା ପର୍ଯ୍ୟନ୍ତ ସବୁ ଆଣନ୍ତି। ସେ ଅତି ସରଳ ନିଷ୍କପଟ ଥିଲେ। ତାଙ୍କର ଧନ ନଥିଲା। କିନ୍ତୁ ମନ ଥିଲା ବହୁତ ଉଚ୍ଚରେ। ପର ଆପଣା ଭିତରେ କିଛି ତଫାତ୍ ନ ଥିଲା ତାଙ୍କ ହୃଦୟରେ।

ସୁବର ମନେପଡେ ତା ବାପାଙ୍କ କଥା। ତା'ର ହେତୁ ହେଲାଦିନୁ ସେ ଦିନେ ହେଲେ ଦେଖିନି ତା ବାପାଙ୍କ ସୁଖ। ଏତେ ଅଭାବରେ ରହି ମଧ ସେ ଦିନେ କାହା ଆଗରେ କହନ୍ତି ନାହିଁ। ଜୀବନରେ ଭଲ ଧୋତି ଖଣ୍ଡେ ମଧ ପିନ୍ଧି ନାହାଁନ୍ତି, ଗୋଡରେ ଯୋତା ପିନ୍ଧିବା ସୁବ ଦେଖି ନାହିଁ।

ଥରେ ଥରେ ନୀଳାଦ୍ରି ନାଥବାବୁ ଗାଁକୁ ଗଲାବେଳେ ସୁବ ଲୁଚାଇ ଧୋତି ଗାମୁଛା ତା ବାପାଙ୍କ ବ୍ୟାଗ୍‌ରେ ପୂରାଇଦିଏ। ତଥାପି ସେ ତାକୁ ଗ୍ରହଣ କରନ୍ତି ନାହିଁ। ଝିଅକୁ ବହୁତ କଥା ବୁଝାନ୍ତି।

ମା' ମରିଗଲା ପରେ ନୀଳାଦ୍ରି ନାଥବାବୁଙ୍କର ମନର ଅବସ୍ଥା ଭଲ ରହିଲା ନାହିଁ। ସର୍ବଦା ମା'କୁ ଝୁରିବାକୁ ଲାଗିଲେ ଏବଂ ଦେହ ପ୍ରତି ଯତ୍ନ ନେଲେ ନାହିଁ। ସେ ବହୁତ ପରିଶ୍ରମୀ ଥିଲେ। ବସିବା ପାଇଁ ତାଙ୍କୁ ଭଲ ଲାଗେ ନାହିଁ।

ସୁବର ବଡ ପୁଅ ଚଗଲା ହେବାରୁ ନୀଳାଦ୍ରି ନାଥବାବୁ ତାକୁ ନିଜ ପାଖକୁ ନେଇ ଆସିଲେ। ନାତିକୁ ସେ ବହୁତ ଭଲ ପା'ନ୍ତି। ସୁବର ସାନ ପୁଅଟି ମଧ ସ୍କୁଲ୍‌ରେ ପଢୁଥାଏ। ମାମୁଁ, ଭଣଜା ସାଙ୍ଗ ହୋଇ ସ୍କୁଲ୍ ଯାନ୍ତି।

କାଲି ପରି ସୁବର ମନେପଡେ ତା ବାପାଙ୍କ କଥା। ତା'ର ସାନ ଝିଅଟି ବର୍ଷକର ହୋଇଥାଏ। ଥରେ ନୀଳାଦ୍ରି ନାଥବାବୁ ଆସି ଝିଅ ପାଖରେ ପହଞ୍ଚିଲେ। ଦେହ ଭଲ ନାହିଁ କହି ବହୁତ ବ୍ୟସ୍ତ ହେଲେ। ସୁବ ପଚାରିଲା କ'ଣ ହୋଇଛି ? ସେ କହିଲେ–"ଦାନ୍ତମୂଳ ବହୁତ ବିନ୍ଧୁଛି ରାତିରେ ମୁଁ କମା ଶୋଇପାରୁନି"।

ନୀଳାଦ୍ରି ନାଥ ବାବୁ ଝିଆରି ଜୋଇଁଙ୍କ ପାଖକୁ ଗଲେ। ସେ ଗିରିଜା ବାବୁଙ୍କୁ ଦେଖାଇବାକୁ କହିଲେ।

ତା ଆରଦିନ ନୀଳାଦ୍ରି ନାଥବାବୁ ତାଙ୍କ ଜୋଇଁକୁ ଧରି ଗଲେ ଗିରିଜାବାବୁଙ୍କ ପାଖକୁ। ଗିରିଜାବାବୁ ନୀଳାଦ୍ରି ନାଥବାବୁଙ୍କୁ ଦେଖି କିଛି କହିଲେ ନାହିଁ। ତାଙ୍କ ଜୋଇଁଙ୍କ ଆଗରେ କହିଲେ ଫାଷ୍ଟଷ୍ଟେଜ୍ କ୍ୟାନସ୍‌ର, ଔଷଧପତ୍ର ଖାଇଲେ ଭଲ ହୋଇଯିବେ। ହେଳା କରିବେ ନାହିଁ। ମଝିରେ ମଝିରେ ଆସି ଦେଖାଉଥିବେ।

ନୀଳାଦ୍ରି ନାଥବାବୁଙ୍କର ଭଉଣୀ ଭିଣେଇ ଥା'ନ୍ତି କଟକରେ। ସେମାନେ ଶୁଣି ବହୁତ ବ୍ୟସ୍ତ ହେଲେ।

ନୀଳାଦ୍ରି ନାଥବାବୁ ଔଷଧପତ୍ର ନେଇ ଗାଁକୁ ଗଲେ। ସ୍ତ୍ରୀର ଦେହ ଖରାପ ସହିତ ଅର୍ଥାଭାବ ତାଙ୍କୁ ବେଶି ବିବ୍ରତ କରିପକାଇଲା। ଯାହା ଫଳରେ ସେ ହତାଶ ହୋଇ ପଡି ଦେହ ପ୍ରତି ଅବହେଳା କଲେ ଓ ବର୍ଷେ ଛ'ମାସେ କଟକ ଆସିଲେ ନାହିଁ ଡାକ୍ତରଙ୍କୁ ଦେହ ଦେଖାଇବାକୁ। ଯେତେବେଳେ ଆସିବେ କଟକ ଦିନକ ପାଇଁ। ଯେତେ ସୁବ କହିବ ଡାକ୍ତର ଦେଖାଇବାକୁ ନୀଳାଦ୍ରି ନାଥବାବୁ ଝିଅ କଥା ନ ଶୁଣି ଗାଁକୁ ପଳାନ୍ତି।

ଆଗ ସମୟରେ ଗାଁ ଗଣ୍ଡାରେ ଦେହ ଖରାପ ହେଲେ ଠାକୁରଙ୍କର ଅନୁସରଣ ନିଅନ୍ତି।

ନୀଳାଦ୍ରି ନାଥବାବୁଙ୍କର ଠାକୁରଙ୍କ ପ୍ରତି ଭାରି ବିଶ୍ୱାସ ଥିଲା। ସେ ସବୁଦିନେ ପୂଜା ପୂଜି କରନ୍ତି। ସେ କାହାକୁ କିଛି ନ କହି ମହାଦେବଙ୍କ ଅନୁସରଣ ନଉଥାନ୍ତି। ଘରେ କେହି ଜାଣିପାରିଲେ ନାହିଁ। ଏହିପରି ଦୁଇ ବର୍ଷ ଅତିବାହିତ ହୋଇଗଲା।

ହର ପ୍ରସନ୍ନ ଭାଇନା ସେତେବେଳକୁ ରାଉରକେଲାରେ ଥା'ନ୍ତି। ସେ ମଧ ତାଙ୍କ ବାପାଙ୍କ ଦେହ ଖରାପ ଜାଣନ୍ତି ନାହିଁ।

ସୁବ ସେହି ବର୍ଷ ଦୋଳକୁ ଯାଇଥାଏ ଗାଁକୁ। ହର ପ୍ରସନ୍ନ ଭାଇନା ଆସି ନ ଥାନ୍ତି। ସେ ଦେଖିଲା ତା ବାପାଙ୍କ ଦେହ ବହୁତ ଖରାପ। ସେ ବହୁତ ଝଡ଼ି ଯାଇଥା'ନ୍ତି। ସୁବର ମନ ବହୁତ ଖରାପ ହେଲା ବାପାଙ୍କ ଦେହଲାଗି। ସେ ଦୁଃଖ ଓ ରାଗରେ ତା ବାପାଙ୍କୁ କହିଲା କଟକ ଯାଇ କାହିଁକି ଡାକ୍ତର ଦେଖାଉନାହଁ କି ଔଷଧ ପତ୍ର ଖାଉନାହଁ?

ନୀଳାଦ୍ରି ନାଥବାବୁ ମୁଣ୍ଡରେ ହାତ ଦେଇ ବସିଥାନ୍ତି ଦୁଃଖରେ। ମୁହଁର ସରସତା କୁଆଡେ ଉଭାଇ ଯାଇଥାଏ।

ସୁବ ବୋଉ କହିଲେ– ଆଲୋ ଝିଅ ତୋ ବାପା ପଇସାପତ୍ର ଅଭାବରୁ ଯାଉନାହାନ୍ତି। ତାଙ୍କର ତ ସବୁବେଳେ ଅଭିମାନ ପୁଅ ବୋହୂଙ୍କ ଉପରେ।

ନୀଳାଦ୍ରି ନାଥବାବୁ ସ୍ତ୍ରୀ ଉପରେ ବିରକ୍ତ ହୋଇ କହିଲେ– "ମୁଁ ଚାହେଁ ମରିବାକୁ। ମୁଁ କିପରି ଚଳୁଛି କିଏ ପଚାରିଛନ୍ତି?"

ସୁବ ତା ବାପାଙ୍କ କଥା ଶୁଣି ବିରକ୍ତ ହୋଇ କହିଲା– ପୁଅ ପାଖରେ ଅଭିମାନ କ'ଣ? ତୁମର ଯଦି ପଇସା ପତ୍ର ଅଭାବ ଭାଇନାଙ୍କ ପାଖକୁ ଲେଖ। ଆଉ କ'ଣ ପଇସା ପାଇଁ ପ୍ରାଣ ଯିବ?

ଦୋଳ ସାରି ସୁବ କଟକ ଫେରିଆସିଲା। କଟକରୁ ଭାଇ ପାଖକୁ ବାପାଙ୍କ ଦେହକଥା ଚିଠିରେ ଲେଖିଲା।

ହର ପ୍ରସନ୍ନ ଭାଇନା ସୁବର ଚିଠି ପାଇ ବାପାଙ୍କ ଲାଗି ବହୁତ ବ୍ୟସ୍ତ ହୋଇପଡ଼ିଲେ ଏବଂ ଛୁଟି ନେଇ ଆସିବେ ବୋଲି ଭଉଣୀ ପାଖକୁ ଜଣାଇଲେ।

ନୀଳାଦ୍ରି ନାଥ ବାବୁଙ୍କର ଦେହ ବେଶି ଖରାପ ହେବାରୁ ସେ ବାଧହୋଇ କଟକ ଆସିଲେ ଝିଅ ପାଖକୁ। ଭିଣେଇ ଡାକ୍ତର। ସେ ତାଙ୍କୁ ନେଇଗଲେ ଗିରିଜା ବାବୁଙ୍କ ପାଖକୁ। ଜୋଇଁ ମଧ ସାଙ୍ଗରେ ଗଲେ।

ଗିରିଜାବାବୁ ଦେଖି କହିଲେ, ଆଉ ହେଳା କରିବା ଠିକ୍ ନୁହେଁ। ଅପରେସନ୍ କରିବାକୁ ପଡ଼ିବ। ତୁମେ ତାଙ୍କ ପୁଅକୁ ଡକାଇ ତାଙ୍କୁ କଲିକତାର ଚିତ୍ତରଞ୍ଜନ ହସ୍‌ପିଟାଲକୁ ନେଇଯାଅ।

ସୁବ କାନ୍ଦୁଥାଏ ତା ବାପାଙ୍କ ପାଇଁ। ତାଙ୍କ ଦୁଇ ଜୋଇଁ ତାଙ୍କୁ କଲିକତା ନେଇଗଲେ। ହର ପ୍ରସନ୍ନ ଭାଇନାଙ୍କୁ ଟ୍ରଙ୍କଲ୍ କରାହେଲା। ସେ ପଇସାପତ୍ର ନେଇ ରାଉର୍‌କେଲାରୁ କଲିକତା ଯିବେ।

ସେ ମଧ୍ୟ ଆସି କଲିକତାରେ ପହଞ୍ଚିଲେ ଅପରେସନ୍ ବେଳକୁ। ସେ ମଧ୍ୟ, ବହୁତ ବ୍ୟସ୍ତରେ ଥା'ନ୍ତି ବାପାଙ୍କ ପାଇଁ।

ତା ବୋଉ ପାଇଁ ସୁବ ସବୁ ପିଲାଙ୍କୁ ନେଇ ଗାଁରେ ରହିଲା। ନିଜେ ଘରର ଦାୟିତ୍ୱ ପଇସା ପତ୍ର ଖର୍ଚ୍ଚ କରି ଚଳେ।

ଝିଅ ପଇସା ପତ୍ର ଖର୍ଚ୍ଚ କରିବା ଦେଖିଲେ ସୁବ ବୋଉଙ୍କ ଦେହ ସହେନି। କାନ୍ଦିପକାଇ କହନ୍ତି ତୁ ପଇସାପତ୍ର ଘର ପାଇଁ ଖର୍ଚ୍ଚ କରୁଛୁ ଦେଖିଲେ ତୋ ବାପା ସହିବେଟି ?

ସୁବ କହିଲା ଦୁଇ ଭାଇଙ୍କୁ ଆଉ ତତେ ଛାଡି ମୁଁ କଟକରେ ରହିପାରିବି ? ହଉ ପଇସା ଖର୍ଚ୍ଚ ପାଇଁ ତୁ ବ୍ୟସ୍ତ ହଅ ନା। ମୁଁ ପଇସା ଖର୍ଚ୍ଚ କରୁଛି ବୋଲି ବାପା ଆସିଲେ ତୁ କହିବୁ ନାହିଁ।

ସୁବ ବୋଉ ଝିଅର କଥା ଶୁଣି ଭାବନ୍ତି ସୁବଟା ମୋର ପୁଅ ହୋଇଥାନ୍ତା କି ? କେତେ ଆମ ଲାଗି ବ୍ୟସ୍ତ ହେଉଛି ? ଆଖିରୁ ତାଙ୍କର ବୋହିପଡେ ଲୁହ ! ସେ ଭାବନ୍ତି ତାଙ୍କ ବାପମା'ଙ୍କ କଥା।

ଏ ବୁଢାବୁଢ଼ୀ ବୟସରେ ତାଙ୍କ ଭାଗ୍ୟରେ ଏୟା ଥିଲା ଭାବି ସେ ଆଖିରୁ ଲୁହ ପୋଛିପକାନ୍ତି।

ନୀଳାଦ୍ରି ନାଥବାବୁଙ୍କର କଲିକତାରେ ଅପରେସନ୍ ଭଲରେ ହେଲା। କିଛିଦିନ ରହି ସେ ଗାଁକୁ ଫେରିଲେ। ସେଠିକାର ଡାକ୍ତର ମନା କରିଥା'ନ୍ତି ପରିଶ୍ରମ କରିବାକୁ। କଲିକତାର କାଳି ଘାଟ୍‌ରେ ସୁବର ଖୁଡ଼ୀ ଶାଶୁଙ୍କର ଜଣେଇ ଖୁଡ଼ୀ ଥା'ନ୍ତି। ସେ ହେବେ ଅଜା ଆଈ। ସେ ବହୁତ ଭଲ ଲୋକ। ଅପରେସନ୍ ବେଳେ ବହୁତ ସାହାଯ୍ୟ କରିଛନ୍ତି। ସୁବକୁ ଘରର ପରିସ୍ଥିତି ନେଇ ସବୁ ପ୍ରକାର ଜଞ୍ଜାଳ କରିବାକୁ ପଡୁଥିଲା। ତା ବାପାଙ୍କ ଦେହ ଲାଗି ସେ ସର୍ବଦା ଚିନ୍ତା କରୁଥିଲା।

କିନ୍ତୁ ବେଶିଦିନ ଗାଁରେ ନ ରହି ସୁବ ପିଲାଙ୍କୁ ଧରି କଟକ ପଳାଇ ଆସିଲା।

ନୀଳାଦ୍ରି ନାଥ ବାବୁଙ୍କ ମନ କେତେବେଳେ ଭଲ ନ ଥାଏ। ସେ ସମୟ ସମୟରେ ଝିଅ ପାଖକୁ ଗଲେ ସ୍ତ୍ରୀ ଓ ଦୁଇ ପୁଅଙ୍କ ପାଇଁ ବ୍ୟସ୍ତ

ହୋଇପଡ଼ନ୍ତି। ଅତି ଦୁଃଖରେ ଝିଅକୁ କହନ୍ତି ମୁଁ ମରିବା ପାଇଁ ଚିନ୍ତା ନାହିଁ। ମୋର ଯଦି କିଛି ହୋଇଯାଏ ତୋ ବୋଉକୁ ଏ ଛୁଆଦୁଇଟିଙ୍କୁ କିଏ ପଚାରିବ?...

....ତାଙ୍କର ବିକଳ ଆକୁଳ ସୁବକୁ ବଡ ଅସହ୍ୟ ଲାଗେ। ସେ ଧୈର୍ଯ୍ୟ ଧରି ତା'ର ବାପାଙ୍କୁ ସାନ୍ତ୍ୱନା ଦେଇ କହେ, ତୁମେ ନିଶ୍ଚୟ ଭଲ ହୋଇଯିବ ବ୍ୟସ୍ତ ହୁଅନି?

ଡାକ୍ତର ମନା କରିବା ସତ୍ତ୍ୱେ ନୀଳାଦ୍ରି ନାଥ ବାବୁଙ୍କୁ ବାଧ ହୋଇ କାମ କରିବାକୁ ପଡୁଥିଲା। କାରଣ ଅଧେ ସମୟ ପୃଷ୍ଠାରୀ ନ ଥାଏ। ସ୍ତ୍ରୀ ଦେହ ଖରାପ। ଏପରି ନାନା ଦ୍ୱନ୍ଦ୍ୱରେ ପଡି ସେ ବିଶ୍ରାମ ପାଇଲେ ନାହିଁ।

ନୀଳାଦ୍ରି ନାଥବାବୁଙ୍କର ଜୀବନରେ ଗୋଟିଏ ସୌଖୀନ ଥିଲା ଗାଈ। ଗାଈଙ୍କର ଖାଇବାଠାରୁ ସବୁ ଜଞ୍ଜାଳ ସେ ନିଜ ହାତରେ କରୁଥିଲେ। ଗାଈ ବି ନୀଳାଦ୍ରି ନାଥ ବାବୁଙ୍କର ବୋଲ ମାନି ଥିଲେ। ନୀଳାଦ୍ରି ନାଥ ବାବୁ ଡାକିଦେଲେ ସେମାନେ ତାଙ୍କ ପାଖକୁ ପଳାଇ ଆସନ୍ତି।

ନୀଳାଦ୍ରି ନାଥ ବାବୁଙ୍କର ଅପରେସନ୍ ହବାର ସାତ ଆଠ ମାସରେ ଅତ୍ୟଧିକ ପରିଶ୍ରମ ଯୋଗୁଁ ପୁଣି ଦେହ ଖରାପ ହେଲା। ହଠାତ୍ ଦିନେ ନୀଳାଦ୍ରି ନାଥବାବୁ ଗାଁରୁ ଆସି କଟକରେ ଝିଅ ପାଖରେ ପହଞ୍ଚିଲେ। ଦେହ ଲାଗି ବହୁତ ବ୍ୟସ୍ତ ହେଲେ।

ସୁବ ତା ବାପାଙ୍କର ଏ ଅବସ୍ଥା ଦେଖି ଦୁଃଖରେ ଭାଙ୍ଗି ପଡ଼ିଲା। ମନରେ ଦମ୍ଭ ଧରି ତା ବାପାଙ୍କୁ ବୁଝାଇ କହିଲା ହର ପ୍ରସନ୍ନ ଭାଇନାଙ୍କୁ ଲେଖିବା ସେ ତମକୁ ନେଇ କଲିକତା ଯିବେ ଡାକ୍ତର ଦେଖାଇବାକୁ।

ନୀଳାଦ୍ରି ନାଥ ବାବୁ ଝିଅର କଥା ଶୁଣି ବ୍ୟସ୍ତ ହୋଇପଡିଲେ। ଆଉ ମୋ ପାଖରେ ପଇସା ନାହିଁ କଲିକତା ଯିବାକୁ। ତୁ ମା ମୋତେ ସେ କଥା କହନି। ମୁଁ ତ ମରିବି। ହେଲେ ବୋଉ ଆଉ ଦି' ପିଲା କିପରି ଚଳିବେ? ଏତକ କହି ସେ କାନ୍ଦି ପକାଇଲେ।

ତା ବାପାଙ୍କ ବିକଳ ଆକୁଳ ଦେଖି ସୁବର ହୃଦୟ ଫାଟି ପଡିଲା ପରି ଲାଗୁଥାଏ। ପେଟରୁ ଉଠିଲା ଅଜଣା କୋହ। ଆଖିରୁ ବୋହି ପଡ଼ିଲା ଲୁହ ଝରଝର ହୋଇ।

ରାତିରେ ସମସ୍ତେ ଖାଇପିଇ ଶୋଇଲେ।

ତା ବାପାଙ୍କ ଚିନ୍ତାରେ ସୁବକୁ ନିଦ ହେଲା ନାହିଁ। ସେ ବାପଘର, ଶାଶୁଘର ଏବଂ ପିଲାଙ୍କ ଜଞ୍ଜାଳରେ ଘାଣ୍ଟି ହଉଥାଏ। ସେ ଘର ଖର୍ଚ୍ଚରୁ

କାଟି କିଛି ଟଙ୍କା ଜମାଇ ରଖିଥାଏ। ରାତିରେ ସେ ଟଙ୍କାକୁ ଗଣିଲା। ୨୦୦ ଟଙ୍କା ହେଲା। ତା'ର ମନରେ ଟିକେ ସାହସ ଆସିଲା। ତା ଆରଦିନ ତା ବାପାଙ୍କୁ ନେଇକରି ଗଲେ ଗିରିଜାବାବୁଙ୍କ ପାଖକୁ। ସେ କହିଲେ ଶୀଘ୍ର ନେଇଯାଅ କଲିକତା। ଆଉଥରେ ଅପରେସନ୍ ହେବ।

ସୁବ ତା'ର ବାପାଙ୍କୁ ଅତି କାକୁତି ମିନତି କରି ପାଖରେ ରଖିଥିବା ଦୁଇଶହ ଟଙ୍କା ଦେଇ କହିଲା ତୁମ ଜୋଇଁ ତୁମକୁ ନେଇଯିବେ, ବ୍ୟସ୍ତ ହୁଅନା। ଶେଷରେ ବାପା ତାଙ୍କ ଜୋଇଁଙ୍କ ସାଙ୍ଗରେ କଲିକତା ଗଲେ। ଆଗରୁ ହର ପ୍ରସନ୍ନ ଭାଇନାଙ୍କ ପାଖକୁ ଖବର ଯାଇଥିଲା। ସେ ମଧ୍ୟ ଖବର ପାଇ ପଇସା ପତ୍ର ନେଇ କଲିକତା ଆସିଲେ। ଭଲରେ ଅପରେସନ୍ ହେଲା। ସେଠାରେ ୧୫ ଦିନ ରହି ନୀଳାଦ୍ରି ନାଥବାବୁ ପୁଅ ସାଙ୍ଗରେ ରାଉରକେଲା ଗଲେ। ମାସେ ଖଣ୍ଡେ ରାଉର୍‌କେଲାରେ ରହିଛନ୍ତି କି ନାହିଁ ପିଲାଙ୍କ ସକାଶେ ବ୍ୟସ୍ତ ହୋଇ ଗାଁକୁ ସେ ପଳାଇଆସିଲେ।

ଏଥରକ ଡାକ୍ତରମାନେ କହିଛନ୍ତି ଜଗିରଖି ଚଳିବାକୁ। ନୀଳାଦ୍ରି ନାଥବାବୁ ଦୁଇଥର ଅପରେସନ୍ ପରେ ବହୁତ ଝଡ଼ି ଯାଇଥା'ନ୍ତି। ତା'ପରେ ତାଙ୍କୁ ହେଲା ଟାଇଫଏଡ୍। ତା ପରେ ପରେ ଆଗପରି ତାଙ୍କର ଦେହ ଖରାପ ହେଲା। ଦୋଳ ପନ୍ଦରଦିନ ଥାଏ।

ନୀଳାଦ୍ରି ନାଥବାବୁଙ୍କ ଦେହ ଖରାପ ହେବାରୁ ସୁବ ବୋଉଙ୍କ ମନ ଦୁଃଖରେ ଅସ୍ଥିର ହୋଇପଡିଲା। ଶେଷରେ ନୀଳାଦ୍ରି ନାଥବାବୁଙ୍କ ଦେହ ଏପରି ଖରାପ ହେଲା ଯେ ବାଧ୍ୟ ହୋଇ କଟକ ବଡ଼ ଡାକ୍ତରଖାନାରେ ରହିଲେ। ସୁବ ବୋଉ ପିଲାମାନଙ୍କୁ ନେଇ ଗାଁରୁ ପଳାଇ ଆସିଲେ କଟକ।

ସେତେବେଳକୁ କୁନୁର ବି.ଏସ୍ ସି. ପରୀକ୍ଷା ଚାଲିଥାଏ। ଡାକ୍ତରଖାନାରେ ବାପାଙ୍କୁ ଦେଖି ସେ ବ୍ୟସ୍ତ ହୋଇଯାଇଥାଏ। ରାତିରେ ତାଙ୍କ ଜୋଇଁ ଏବଂ ସାନ ମାମୁଁ ଜଗି ରହନ୍ତି। ମଝିରେ ମଝିରେ ବସନ୍ତ ନାନୀ, ଭିଣେଇ ସବୁ ଖବର ବୁଝନ୍ତି।

ନୀଳାଦ୍ରି ନାଥବାବୁଙ୍କର ଆସ୍ତେ ଆସ୍ତେ ଦେହ ବେଶି ଖରାପ ଆଡକୁ ଗତି କଲା। ସେବର୍ଷ ହର ପ୍ରସନ୍ନ ଭାଇନା ତାଙ୍କ ପିଲାଙ୍କୁ ନେଇ ଆସିଥାନ୍ତି ଦୋଳ ଦଶମୀ ଦିନ। ପୁଅ ଝିଅ ସମସ୍ତେ ତାଙ୍କ ପାଖରେ ବସିଥାଉ ମନ ଦୁଃଖରେ। ନୀଳାଦ୍ରି ନାଥବାବୁଙ୍କର ମନେ ପଡ଼ିଗଲା ଦୋଳକଥା। ଘରେ ଠାକୁର ବାହାରୁଥିବେ, ଘଣ୍ଟ ବାଜୁଥିବ। ତାଙ୍କର କାନ୍ଦ ଦେଖିବ କ'ଣ? ପିଲାଙ୍କ ପରି କଇଁ କଇଁ ହୋଇ କାନ୍ଦି ପକାଇ କହିଲେ—"ମୋର ଏ ବର୍ଷ ଶେଷ ଦୋଳ। ମୋତେ ଗାଁକୁ ନେଇ ଯାଅ।" ଏକାଦଶୀ ଦିନ ଜିନିଷ ପତ୍ର ଦୋଳ

ପାଇଁ କିଣାକିଣି ହେଲା। ଦ୍ୱାଦଶୀ ଦିନ ପୁଅ ଝିଅ ସମସ୍ତେ ମିଶି ନୀଳାଦ୍ରି ନାଥ ବାବୁଙ୍କୁ ନେଇ ଗାଁକୁ ଗଲେ। ତାଙ୍କର ଭଉଣୀ ଭିଶେଇ ମଧ୍ୟ ସାଙ୍ଗରେ ଯାଇଥା'ନ୍ତି।

ତାଙ୍କର ଭାଣିଜୀ ଜୋଇଁକୁ ଡାକି ଘରକୁ ନେଲେ କାଳେ ଆଉ ଯାଇ ନ ପାରିବେ।

ଦ୍ୱାଦଶୀ ଦିନ ଲକ୍ଷ୍ମୀ ନୃସିଂହ ମହାପ୍ରଭୁଙ୍କର ପହଣ୍ଡି ଚାଲିଛି। ଘଣ୍ଟ ସଂକୀର୍ତ୍ତନରେ ସେ ଜାଗା ମୁଖରିତ ହୋଇ ଉଠୁଛି। ନୀଳାଦ୍ରି ନାଥବାବୁ ଠାକୁରଙ୍କ ଆଗରେ ଲମ୍ବ ହୋଇ ଶୋଇପଡିଲେ। ସେ କାନ୍ଦିକରି କହୁଥା'ନ୍ତି ମୋତେ ବଞ୍ଚାଅ। ମୋର ପିଲା ଦୁଇଟି ମଣିଷ ହୋଇନାହାନ୍ତି। ଠାକୁରଙ୍କ ପହଣ୍ଡି ସମୟରେ ଦାଣ୍ଡ ଫାଟି ପଡୁଥାଏ। ଲୋକାରଣ୍ୟରେ ସମସ୍ତେ ଦେଖି କାନ୍ଦି ପକାଉଥାନ୍ତି। ତାଙ୍କର ଭାଇ କାନ୍ଦିକରି ଠାକୁରଙ୍କ ଥାଳି ତାଙ୍କ ଉପରେ ଥୋଇ ଦଉଥା'ନ୍ତି। ଏହିପରି ସେ ଦିନଟି କାନ୍ଦରେ କଟିଲା। ସେଦିନ ରାତିରେ ନୀଳାଦ୍ରି ନାଥବାବୁ ସାନ ଭାଇର ହାତକୁ ଧରି କହିଲେ ତୋତେ ମୋ ପିଲା ଲାଗିଲେ।

ତା ଆରଦିନ ନୀଳାଦ୍ରି ନାଥ ବାବୁଙ୍କୁ ନେଇ ତାଙ୍କ ପିଲାମାନେ କଟକ ଡାକ୍ତରଖାନାରେ ଛାଡ଼ିଲେ। ସେ ଡାକ୍ତରଖାନାରେ ରହି ରହି ବିରକ୍ତ ହୋଇଗଲେ।

ହଠାତ୍ ଦିନେ ନୀଳାଦ୍ରି ନାଥବାବୁ ଏକୁଟିଆ ଆସି ସୁବ ପାଖରେ ପହଞ୍ଚିଲେ। ସୁବ ଦେଖି ତା'ର ବାପାଙ୍କୁ କହିଲା—ତୁମେ କୁଆଡେ ଆସିଲ ?

ନୀଳାଦ୍ରି ନାଥବାବୁ ଝିଅକୁ କହିଲେ ମା'ରେ ମୁଁ ଜମା ଆଉ ରହିପାରିବି ନାହିଁ, ଡାକ୍ତରଖାନାରୁ ମୋତେ ତୋ ପାଖକୁ ନେଇଆ। ତୁ ଟିକେ ଜୋଇଁକୁ କହ।

ତାଙ୍କର ବ୍ୟସ୍ତତା ଦେଖି ଗିରିଜାବାବୁଙ୍କୁ କହି ଘରକୁ ନେଇଆସିଲୁ !

ନୀଳାଦ୍ରି ନାଥ ବାବୁଙ୍କର ଏପରି ଅବସ୍ଥାରେ ସୁବର ମନ ତା ବୋଉ ପାଇଁ ଦୁଃଖରେ ଭାଙ୍ଗି ପଡ଼େ।

ଦିନକୁ ଦିନ ଦେହ ବେଶି ଖରାପ ହେଲା। ସେପରି କଷ୍ଟ ଯନ୍ତ୍ରଣା ଭଗବାନ ଶତ୍ରୁକୁ ନ ଦିଅନ୍ତୁ।

ଦୋଳ ପରେ ହର ପ୍ରସନ୍ନ ଭାଇନା ପିଲାଙ୍କୁ ତାଙ୍କର ନେଇ ରାଉର୍କେଲା ଚାଲି ଯାଇଥିଲେ। ମଝିରେ ସେ ଆସି ବାପାଙ୍କ ପାଖରେ ଆଠ ଦଶ ଦିନ ରହି ରାଉର୍କେଲା ଯାନ୍ତି। ନୀଳାଦ୍ରି ନାଥ ବାବୁଙ୍କ ଦେହର ଅବସ୍ଥା ଏପରି ହେଲା ଡାକ୍ତର ଗିରିଜାବାବୁ ଚାରି ପାଞ୍ଚ ଦିନ ପରେ ଘରେ ଆସି ଚିକିତ୍ସା କଲେ। କିନ୍ତୁ ଫଳ କିଛି ହେଲା ନାହିଁ। ଆସ୍ତେ ଆସ୍ତେ ଖାଇବା ପିଇବା

ବନ୍ଦ ହୋଇଆସିଲା ଫଳ ରସ, ପ୍ରଭୃତି ଜିନିଷ ଆଉ ତଣ୍ଟିରେ ଗଳିଲା ନାହିଁ।

ନୀଳାଦ୍ରି ନାଥବାବୁଙ୍କର ଏମିତି ଅବସ୍ଥାରେ ପୁଅ ଝିଅ ସମସ୍ତେ ତାଙ୍କ ପାଖରେ ଜଗି ରହିଥା'ନ୍ତି। ହର ପ୍ରସନ୍ନ ଭାଇନାଙ୍କ ପାଖକୁ ଟ୍ରଙ୍କଲ୍ କଲୁ। ସେ ଆସି ପାଞ୍ଚ ଛ'ଦିନ ରହିଲେ। ସେ ଦିନେ ରାଉର୍‌କେଲା ବାହାରିଲେ। ନୀଳାଦ୍ରି ନାଥ ବାବୁ ପୁଅ ହାତକୁ ଧରି ଖନେଇ ଖନେଇ କହୁଥା'ନ୍ତି। ତୁ ଯା'ନା ମୁଁ ମରିଯିବି, ତୋତେ ଦେଖିପାରିବି ନାହିଁ। ମା', ଭଉଣୀ, ଛୋଟ ଭାଇ ଦୁଇଟି ତୋତେ ଲାଗିଲେ। ଏତକ କହି ପାଟି ଫିଟୁ ନ ଥାଏ। ଆଖିରୁ ଲୁହ ଗଡ଼ି ପଡୁଥାଏ। ଶେଷ କଥାବାର୍ତ୍ତା ତାଙ୍କର ସେତିକି। ଆଉ ତାଙ୍କର ପାଟି ଫିଟି ନାହିଁ।

ନୀଳାଦ୍ରି ନାଥବାବୁଙ୍କର ଏ ଅବସ୍ଥା ଦେଖି ତାଙ୍କର ପୁଅ ବୁଝାସୁଝା କରି ରାଉରକେଲା ଗଲେ ପିଲାଙ୍କୁ ଆଣିବା ପାଇଁ।

ସେହି ସମୟରେ ସୁବର ଦୁଇଟି ପିଲାଙ୍କୁ ହୋଇଥାଏ ଟାଇଫଏଡ୍। ସେ ଚାରିଆଡୁ ମନ ଦୁଃଖରେ କ'ଣ କରିବ କିଛି ବୁଝି ପାରୁନଥାଏ। ନୀଳାଦ୍ରି ନାଥବାବୁ ସେତେବେଳକୁ ପୂରା ଶଯ୍ୟାଶାୟୀ। କହିବାକୁ ଯାହା ଭାବନ୍ତି ତାହା ସିଲଟରେ ଲେଖିଦିଅନ୍ତି।

କାଲି ପରି ସୁବର କେତେ କଥା ମନେପଡୁଛି। ଜ୍ୟେଷ୍ଠ ମାସ, ସାବିତ୍ରୀ ଅମାବାସ୍ୟା ଥାଏ। ତା'ର ମନ ବୋଉ ପାଇଁ ଦୁଃଖରେ ଭାଙ୍ଗି ପଡୁଥାଏ। ସେ ଭାବିଲା ସାବିତ୍ରୀ ଅମାବାସ୍ୟା ଏ ବର୍ଷ କ'ଣ ବୋଉର ଶେଷ ? ସେ ନୂଆ ଶାଢ଼ି ଓ କାଚ କିଣି ରଖିଥାଏ।

ନୀଳାଦ୍ରି ନାଥ ବାବୁ ଶୋଇଥା'ନ୍ତି। ଭଉଣୀ ଭିଣେଇ ତାଙ୍କର ଆସିଥା'ନ୍ତି ଦେଖିବାକୁ। ତାଙ୍କର ମନେ ପଡିଗଲା ସାବିତ୍ରୀ ଅମାବାସ୍ୟା କଥା। ଭଉଣୀକୁ ଓ ଝିଅକୁ ଅମାବାସ୍ୟା ଲାଗି କିଛି ଟଙ୍କା ଦେଇନାହାନ୍ତି। ତାଙ୍କର ମନ କଅଣ ହୋଇଗଲା। ଔଷଧ କିଣା ହୋଇ ବଳିଥାଏ ପନ୍ଦରଟଙ୍କା। ସେ ଟଙ୍କା ତାଙ୍କ ତକିଆ ତଳେ ଥାଏ। ବହୁତ କଷ୍ଟରେ ସେଇଠି ତକିଆ ତଳୁ ଟଙ୍କା ଆଣି ଝିଅକୁ ଦଶ ଟଙ୍କା ଓ ଭଉଣୀକୁ ପାଞ୍ଚ ଟଙ୍କା ଦେଇ ସିଲଟରେ ଲେଖିଦେଲେ। ମୋର ସାବିତ୍ରୀ ଅମାବାସ୍ୟାରେ ଟଙ୍କାଦବା ଶେଷ। ସାବିତ୍ରୀ ଅମାବାସ୍ୟାଦିନ କନ୍ଦାକନ୍ଦିରେ ଚାରିଟା ବାଜିଲା ପୂଜା କରିବାକୁ।

ଅମାବାସ୍ୟା ଯିବାରେ ତିନି ଚାରି ଦିନ ପରେ ସନ୍ଧ୍ୟାବେଳକୁ ଦିନେ ନୀଳାଦ୍ରି ନାଥବାବୁ ଝିଅକୁ ହାତ ଠାରି ଡାକି ସିଲଟରେ ଲେଖି ଦେଲେ, ମା'ରେ ମୋ ପାଟିରେ ଟିକେ ତୁଳସୀ ପାଣି ଦେବୁ ?

ସୁବ ଠାକୁରଘରୁ ତୁଳସୀ ପାଣି ଆଣି ତା'ର ବାପାଙ୍କ ପାଟିରେ ଦେଲା। ସେ ଝିଅକୁ ଆଉଁସି ପକାଇ କାନ୍ଦୁଥା'ନ୍ତି। ସୁବ ମଧ୍ଯ ବାପାଙ୍କ ଉପରେ ମୁଣ୍ଡ ରଖି କାନ୍ଦୁଥାଏ। ତା'ର ଭାଇ କଥା ମନେପଡ଼େ। ଭାଇ ତା'ର ବାପାଙ୍କର କେତେ ସେବାକରି ପାଠ ପଢ଼ିଛି। ସେପରି ପୁଅ ଆଜି କାଲି ମିଳବା କଷ୍ଟକର।

ସେହିଦିନ ରାତିରେ ସୁବ ପୁଅଝିଅଙ୍କ ଦେହ ବହୁତ ଖରାପ ହୋଇଥାଏ। ସେ ରାତିଯାକ ଅନିଦ୍ରା ହୋଇ ଘୁମେଇ ପଡ଼ିଛି। ସାନ ଭାଇ ତା'ର ଡାକ ପକାଇଲା ନାନୀ ଭୋର୍ ଉଠ୍। ବାପାଙ୍କ ଆଖି ଦୁଇଟା କେମିତି ଦେଖାଯାଉଛି!?

ସୁବର ନିଦ ଚାଉଁକିନା ଭାଙ୍ଗିଗଲା। ଛାତି ଭିତର ଥରିଉଠିଲା। ସେ ତର ତର ହୋଇ ଆସି ତା ବାପାଙ୍କୁ ଆଉଁସି ପକାଇ କାନ୍ଦି ଉଠିଲା। ପିଲାଦିନର ଅତୀତ କଥା ମନେପଡ଼ିଗଲା। ଜୀବନରେ ବାପା ଆମର ସୁଖ ପାଇବା ଦେଖିନାହାନ୍ତି।

.....ଦିନ ନଅଟା ବେଳକୁ ବାପାଙ୍କର ଶେଷ ସମୟ ଆସିଗଲା। ବୋଉ ତା'ର ବାପାଙ୍କ ଗୋଡ଼ ତଳେ କାଠ ପିତୁଳା ପରି ବସିଥାଏ ଦୁଃଖରେ।

ଭାଇ ହସପିଟାଲ୍‌କୁ ଦୌଡ଼ିଲା ଭିଣେଇକୁ ଡାକିବାକୁ। ନାନୀ ଶୁଣି ଦୌଡ଼ି କରି ଆସିଲା ଦିନ ବାରଟା ବେଳକୁ। ସାଲାଇନ୍ ଦିଆହେଲା। ରାତି ସାତଟା ସମୟ, ସାଲାଇନ୍ ଚାଲିଥାଏ। ଘରେ ବନ୍ଧୁବାନ୍ଧବ ଓ ଆତ୍ମୀୟସ୍ୱଜନ ଭର୍ତ୍ତି। ସଙ୍ଗେ ସଙ୍ଗେ ରାଉରକେଲା ଫୋନ୍ ହେଲା ବାପାଙ୍କର ଶେଷ ସମୟ।

ହଠାତ୍ ବାପାଙ୍କ ହାତରୁ ସାଲାଇନ୍ ଖସିପଡ଼ିଲା। ଭାଇ ଦୌଡ଼ିଗଲା ଡାକ୍ତରଖାନା। ଭିଣେଇ ଆସି ଦେଖିଲା ବେଳକୁ ସବୁ ଶେଷ।

ସୁବ ବୋଉ କାନ୍ଦି କାନ୍ଦି ଗଡୁ ଥା'ନ୍ତି। ସୁବ ଆଉ ତା ଭାଇଙ୍କ ଅବସ୍ଥା କହିଲେ ନ ସରେ? ସୁବ ମନେ ମନେ ଭାବିଲା କେତେ ପଇସା ତା ବାପାଙ୍କ ପାଇଁ ବୋହିଗଲା; କିନ୍ତୁ ପ୍ରଭୁ ରଖିଲେ ନାହିଁ। ବନ୍ଧୁବାନ୍ଧବ ମୁଣ୍ଡରେ ହାତ ଦେଇ ବସିଥା'ନ୍ତି। ପୁଣିଥରେ ଫୋନ୍ ହେଲା ରାଉର୍‌କେଲା। ''ବାପା ଚାଲିଗଲେ ତୁମେ ଆସ।''

ହର ପ୍ରସନ୍ନ ଭାଇନା ଫୋନ୍‌ରେ କାନ୍ଦି କହିଲେ ମୁଁ ଯାଉଛି ତୁମେ ବାପାଙ୍କୁ ଶ୍ମଶାନକୁ ନବ ନାହିଁ।

ଅମାବାସ୍ୟାର ଅନ୍ଧାର। ମୁହଁକୁ ମୁହଁ ଦେଖାଯାଉନି। ହଠାତ୍ ବର୍ଷା ପବନ ମାଡ଼ିଆସିଲା। ବର୍ଷା ମୁଷଳ ଧାରାରେ ଅଜାଡ଼ିଲା। ଘର ଭିତରୁ ବାହାରକୁ ଯିବା କଷ୍ଟ। ରାତି ଦୁଇଟା ବାଜିଲା।

ସାମାନ୍ୟ ବର୍ଷା କମିଛି, ନୀଳାଦ୍ରି ନାଥବାବୁଙ୍କୁ ନେଇଗଲେ ଶ୍ମଶାନକୁ। ବାସି ମଡା ହୋଇଯିବେ ବୋଲି କୁନୁ ମୁଖାଗ୍ନି ଦେଲା। ସବୁ କାମ ସାରି ଫେରିଲା ବେଳକୁ ଦିନ ସାତଟା। ସେତିକିବେଳକୁ ହର ପ୍ରସନ୍ନ ଭାଇନା ପିଲାମାନଙ୍କୁ ଧରି ପହଞ୍ଚିଲେ। ସେ ବାପାଙ୍କୁ ନ ଦେଖି କାନ୍ଦି ଗଡୁଥାନ୍ତି। ସମସ୍ତେ ତାଙ୍କୁ ଶ୍ମଶାନକୁ ନେଇଗଲେ। ଶ୍ମଶାନରୁ ଅସ୍ଥି ଆଣି ଗାଁକୁ ଗଲେ।

ଗାଁରେ ନୀଳାଦ୍ରି ନାଥ ବାବୁଙ୍କର ଶୁଦ୍ଧି କ୍ରିୟା ଭଲରେ ସମ୍ପନ୍ନ ହେଲା।

ନୀଳାଦ୍ରି ନାଥବାବୁ ଗଲାପରେ ଘରେ ଭଲ ମନ୍ଦ ଦାୟିତ୍ୱ ସାନ ଭାଇ ବୁଝିଲେ। ଗାଁର ନାଥିଆ ସାମଲ ଘର ଜଗି ରହିଲା। ହର ପ୍ରସନ୍ନ ଭାଇନା ମା'କୁ ଓ ସାନଭାଇକୁ ରାଉରକେଲା ନେଇଗଲେ।

ସୁବ ପାଖରେ ମଝିଆ ଭାଇ ରହିଲା।

ନୀଳାଦ୍ରି ନାଥ ବାବୁ ଗଲାପରେ ସବୁ ଜଞ୍ଜାଳ ବଡ଼ ପୁଅ ଉପରେ ପଡ଼ିଲା।

ସୁବ ବୋଉ ସ୍ୱାମୀ ଗଲାପରେ କେତେବେଳେ ବଡ ପୁଅ ପାଖରେ ତ କେତେବେଳେ ଝିଅ ପାଖରେ ନଚେତ୍ ଗାଁରେ ରହନ୍ତି।

କୁନୁ ବି.ଏସ୍ ସି. ପାସ୍‌କରି ଇଞ୍ଜିନିୟରିଂ ପଢ଼ିବାକୁ କଲିକତା ଗଲା। ସେ ତା'ର ବାପାଙ୍କ ଆଶୀର୍ବାଦରୁ ଫାଷ୍ଟ୍‌କ୍ଲାସ୍ ପାଇ ଇଞ୍ଜିନିୟରିଂ ପାସ୍ କଲା। ଯେଉଁଦିନ ତା'ର ଫଳ ବାହାରିଲା ସେ ଖୁସି ହେବ କ'ଣ ଦୁଃଖରେ ସ୍ତମ୍ଭୀଭୂତ ହୋଇପଡ଼ିଲା। ସେ ମନେ ମନେ ଭାବିଲା ବାପା ଥିଲେ କେତେ ଖୁସି ହେଉଥାନ୍ତେ। ତା ପରେ ବମ୍ବେରେ ଚାକିରି ପାଇ ଜଏନ୍ କଲା।

ହର ପ୍ରସନ୍ନ ଭାଇନା ପଦୋନ୍ନତି ପାଇ ଭୁବନେଶ୍ୱର ଆସିଲେ। ପରେ ତାଙ୍କ ମା' କିପରି ପୁଅ ବିଭାଘର ହବ ସବୁବେଳେ ବ୍ୟସ୍ତ ହେଲେ।

ସୁବ ସେତେବେଳେ ଥାଏ ଭୁବନେଶ୍ୱରରେ। ସେ ମଧ ଭାଇର ବାହାଘର ପାଇଁ ବ୍ୟସ୍ତ ହେଲା। ଯାହାହେଉ ସମସ୍ତେ ଝିଅ ଦେଖାଦେଖି କରି ସୁରୁଖୁରୁରେ ବାହାଘର ସମ୍ପନ୍ନ କଲେ।

ତା'ପରେ ଟୁନୁ ବି.ଏ. ପାସ୍ କରି ବ୍ୟାଙ୍କ୍‌ରେ ଚାକିରି ପାଇଲା। ହର ପ୍ରସନ୍ନ ଭାଇନା ମା'କୁ ତାଙ୍କର ପାଖରେ ବସାଇ କହିଲେ। "ମୁଁ ଏ ଭାଇଟିକୁ ହାତକୁ ଦି' ହାତ କରିଦେଲେ ନିଶ୍ଚିନ୍ତ ହେବି। ବାପା ମୋ ଉପରେ ଯେଉଁ ଦାୟିତ୍ୱ ଦେଇଯାଇଛନ୍ତି ସେଥିରୁ ମୁଁ ମୁକ୍ତ ହେବି"।

ସେ ଭଲ ଝିଅଟିଏ ଠିକ୍ କରି ଭାଇର ବିବାହ କାର୍ଯ୍ୟ ତାଙ୍କ ଘରେ ସମ୍ପନ୍ନ କଲେ ।

ନୀଳାଦ୍ରି ନାଥବାବୁଙ୍କ ଦେହାନ୍ତ ପରେ ସୁବ ବୋଉ ନାତି ନାତୁଣୀଙ୍କର ବିବାହ କାର୍ଯ୍ୟ ସବୁ ଦେଖିଲେ । ଅଣନାତିରେ ବ୍ରତଘର ଦେଖିଲେ ।

ମଝିରେ ମଝିରେ ପୁଅମାନେ ଯେଉଁଠି ଚାକିରି କରିଥା'ନ୍ତି ସୁବ ବୋଉ ପିଲାଙ୍କ ପାଖକୁ ଯା'ନ୍ତି । ସେ ବହୁତ ଶାନ୍ତଶିଷ୍ଟ ଓ ଧୀରସ୍ଥିର । ପୁଅ ଟ୍ରାନ୍ସଫର୍ ହୋଇ ଆସିଲେ ଭୁବନେଶ୍ୱର । ମଝିରେ ସୁବ ବୋଉଙ୍କ ଦେହ ବହୁତ ଖରାପ ହେଲା । ସେ ପୁଅମାନଙ୍କ ପାଖରେ ଥା'ନ୍ତି । ସୁବ ମଝିରେ ମଝିରେ ଯାଏ ମା' ପାଖକୁ । ହଠାତ୍ ଦୁଇ ପୁଅଙ୍କର ଟ୍ରାନ୍ସଫର୍ ହୋଇଗଲା । ଜଣେ ଗଲା ବମ୍ବେ ଓ ଆଉ ଜଣେ ଗଲା ହାଇଦ୍ରାବାଦ । ସୁବ ବୋଉ ବଡ଼ ପୁଅ ପାଖରେ ରହିଲେ । ଆସ୍ତେ ଆସ୍ତେ ଦେହ ବହୁତ ଖରାପ ହେଲାରୁ ହସ୍‌ପିଟାଲରେ ତାଙ୍କର ଚିକିତ୍ସା କରାଗଲା । ସୁବ ସବୁଦିନେ ଯାଏ ତା ବୋଉ ପାଖକୁ ହସ୍‌ପିଟାଲ; କିନ୍ତୁ କିଛି ହେଲା ନାହିଁ । ତାଙ୍କର ଦୁଇ ପୁଅ ମଝିରେ ମଝିରେ ଆସନ୍ତି ମା'କୁ ଦେଖିବାକୁ । ସାନ ପୁଅ ତାଙ୍କର ଥାଏ ହାଇଦ୍ରାବାଦରେ । ମା'ର ଦେହ ଭଲ ନ ହେବାରୁ ସେଠାକୁ ନେଲେ ଭଲ ଡାକ୍ତର ଦେଖାଇବାକୁ ।

ସୁବର ମନେପଡ଼େ ତା' ବୋଉ କଥା । ଯେଉଁଦିନ ତା ବୋଉ ଗଲେ ହାଇଦ୍ରାବାଦ । ସୁବ ଯାଇଥାଏ ଷ୍ଟେସନ୍ । ସେ ଝିଅକୁ ଧରି କେତେ କାନ୍ଦିଲେ ।

ଆଜି ପର୍ଯ୍ୟନ୍ତ ସୁବର ମନରୁ ସେ କଥା ଲିଭି ନାହିଁ । ଯେମିତି ତାକୁ ଲାଗୁଥାଏ ମୋ ବୋଉକୁ ଭଗବାନ ସବୁଦିନ ପାଇଁ ନେଇ ଯାଉଛନ୍ତି । ଟ୍ରେନ୍ ଛାଡ଼ିଲା ପରେ ସୁବ କାନ୍ଦି କାନ୍ଦି ଦୁଇତିନିଦିନ ଘରୁ ଉଠିଲାନି । ତା'ର ବୋଉ କଥା ଖାଲି ମନେପଡ଼ିଲା । ଏମିତି କିଛିଦିନ ଗଲା । ଆସ୍ତେ ଆସ୍ତେ ସୁବ ବୋଉ ଅଚଳ ହୋଇପଡ଼ିଲେ । ପୁଅ ବୋହୂ ବହୁତ ଯତ୍ନ କରୁଥା'ନ୍ତି, ବଡ଼ ବଡ଼ ଡାକ୍ତର ଦେଖାଉଥାନ୍ତି; ମାତ୍ର କିଛି ଭଲ ଜଣା ଯାଉ ନଥାଏ । ସୁବ ସେଥିପାଇଁ ବିବ୍ରତ ହୋଇଯାଉଥିଲା ।

ସୁବ ଫୋନ୍ ପାଇଲା ତା ଭାଇ ପାଖରୁ "ନାନୀ ବୋଉ ଦେହ ସିରିୟସ୍ ଦେଖିବୁ ଯଦି ଆସ୍ ।" ବୋଉର ଦେହ ଖରାପ ଶୁଣି ସୁବ ତା' ସ୍ୱାମୀକୁ ଧରି ଗଲା ହାଇଦ୍ରାବାଦ । ଷ୍ଟେସନ୍‌କୁ ତା ଭାଇ ଆସିଥିଲା । ଭାଇଠାରୁ ବୋଉର ଅବସ୍ଥା ଶୁଣି ସୁବର ମୁଣ୍ଡ ଘୂରିଗଲା ।

ସୁବ ଘରେ ପହଞ୍ଚି ବୋଉ ପାଖରେ ବସି ପଚାରିଲା ବୋଉଲୋ ମୁଁ କିଏ ? ସୁବ ବୋଉ ଚାହିଁଥାନ୍ତି ଝିଅକୁ। ଚିହ୍ନୁଥାନ୍ତି ଟିକେ ଟିକେ। ଆଖିରୁ ତାଙ୍କର ଲୁହ ଗଡ଼ିଲା। ଖନେଇ ଖନେଇ କହିଲେ ତୁ ପରା ମୋ ସୁବ। ସୁବ ଆକାଶପାତାଳ କଥା ଭାବିଲା। ବାପା ଯାଇଥିଲେ, ବୋଉ ଯିବ। ମୋର ସବୁ ସରିଯିବ। ସେ ତା ବୋଉକୁ ଛାଡ଼ି ଘର ଭିତରୁ ବାହାରକୁ ଯିବାକୁ ମନ କଲାନି। ଭାଇ ତା'ର ଜବରଦସ୍ତି ମନ୍ଦିର ବୁଲାଇ ଆଣିଲା। ସୁବ ହାଇଦ୍ରାବାଦରେ ୧୦/୧୫ ଦିନ ରହି ଭୁବନେଶ୍ୱର ଫେରିଲା। ଆସିବାର ୧୦/୧୫ ଦିନ ପରେ ବୋଉ ଆମକୁ ମାତୃହୀନ କରି ଛାଡ଼ି ଚାଲିଗଲା ସେପୁରକୁ। ତା'ର ଶୁଦ୍ଧିକ୍ରିୟା ହର ପ୍ରସନ୍ନ ଭାଇନାଙ୍କ ଘରେ ଭଲରେ ସମ୍ପନ୍ନ ହେଲା।

"ସୁବ ପ୍ରଭୁଙ୍କୁ ଡାକିଲା ମୋ ବୋଉକୁ ବାପାଙ୍କ ପାଖରେ ଶାନ୍ତିରେ ରଖ।"

ସୁବ କହିଲା ତା ବାପା ମରିବା ଆଜିକୁ ୪୦ ବର୍ଷ ହୋଇଗଲା। ବୋଉ ମରବା ୮/୯ ବର୍ଷ ହେଲା। ସେପରି ଦୁଃଖ ସେ ମରିବା ପର୍ଯ୍ୟନ୍ତ ଭୁଲି ପାରିବ ନାହିଁ। ହୃଦୟରେ ବେଦନା ପେଟର କୋହକୁ ସେ ମନରେ ମାରିଲା। ମଝିରେ ମଝିରେ ବାପା ବୋଉଙ୍କ କଥା ମନେପଡ଼ିଲେ ଧାରା ଶ୍ରାବଣ ପରି ଆଖିରୁ ଲୁହ ଗଡ଼ିପଡ଼େ। ସୁବ ମନକୁ ମନ ବୁଝାଏ। ମାନ ଅଭିମାନ ପାଣିଫୋଟକା ପରି। କ୍ଷଣକରେ ତାହା ମିଳାଇଯାଏ। ପିଲାଦିନ କଥା ମନେପଡ଼ିଯାଏ। ସେ ଅଭିମାନ କଲେ, ମୁହଁ ଝାଉଁଳି ପଡ଼ିଲେ କାହା ପେଟକୁ ଦାନା ଯାଉ ନଥିଲା, ସେ କାମ ସରିଯାଇଛି। ଆଉ ଆଖିରୁ ଲୁହ ଗଡ଼ାଇ ଗଡ଼ାଇ ଅନ୍ଧ ହୋଇଗଲେବି ଆଉ ସେମାନେ ଫେରିବେନି, ମୋ ବାପା, ବୋଉ।

ସୁବର ହୃଦୟ ହୋଇଯାଏ କଠିନ। ସେ ଆଖିର ଲୁହ ଆଖିରେ ମାରି ସଂସାର କର୍ତ୍ତବ୍ୟରେ ଆଗେଇଯାଏ। ତା'ର ମନେପଡ଼ିଯାଏ ଶ୍ୱଶୁରଙ୍କ କଥା। ତାଙ୍କର ସ୍ନେହ ମମତାରେ ବାପର ସ୍ନେହ ଅନୁଭବ କରିଥିଲା ସୁବ। ଶ୍ୱଶୁର ବହୁତ ବୁଝାଇ କହନ୍ତି। "ତୋର ବାପ ନାହିଁ ସିନା-ମୁଁ କ'ଣ ତୋ ବାପ ନୁହେଁ"। ସେତକ କଥାରେ ସୁବ ମନରେ ବହୁତ ସାହସ ସଞ୍ଚାର ହୁଏ। ଭଗବାନ ସେଥିରୁ ମଧ ବାଦ୍ ଦେଲେ ନାହିଁ।

ନୀଳାଦ୍ରି ନାଥବାବୁ ଓ ସୁବ ବୋଉଙ୍କ ଆଶୀର୍ବାଦରୁ ତାଙ୍କ ପୁଅ ଝିଅ ଆନନ୍ଦରେ ଅଛନ୍ତି। ଆଜି ମୁଁ ସେହି ଜଗତର କର୍ତ୍ତା ଜଗନ୍ନାଥଙ୍କୁ ଅନୁସରଣ

କରି ଚାଲିଛି। ସେଥିରେ, ପାଉଛି ଆନନ୍ଦ ଏବଂ ଶାନ୍ତି। ତାଙ୍କଗିଠାରେ ମୋର ଏକାନ୍ତ ଲୟ। ସେହି ମୋର ଆଶା ଭରସା, ତାଙ୍କୁ ମୋର କୋଟି କୋଟି ଦଣ୍ଡବତ।

"ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁ ମେ"।

ପ୍ରାଣକୃଷ୍ଣ ମିଶ୍ରଙ୍କ ସ୍ତ୍ରୀ ମୋ ବୋଉର ମାଉସୀ।

ଏକାଘର କୁଟୁମ୍ବରେ ମାଉସୀ ଝିଅାରୀ ବାହା ହୋଇଥିଲେ। ମୋ ବୋଉର ମାଉସୀ ନାଁ ଗଙ୍ଗା। ସେ ଆମର ଗଙ୍ଗ ଆଈ ତା'ର ନାଁଟି ଯେପରି ଢଙ୍ଗଟା ମଧ ସେହିପରି।....

ସେ ହେଉଛନ୍ତି ସାନ ଭଉଣୀ।

ସାତ ଭଉଣୀର ସମସ୍ତେ ସରି ଦୁଇଜଣ ଥିଲେ। ଗଙ୍ଗ ଆଈ ଭାରି ମଜ୍ଜାଳିଆ। ତାକୁ ଆମେ ଥଟ୍ଟାରେ କହୁ ଆଲୋ ଆଈ ସମସ୍ତଙ୍କୁ ଯମ ନେଲା ତୁମ ଦୁଇଜଣକୁ ଛାଡ଼ିଦେଲା।

ଗଙ୍ଗ ଆଈ ହସି ହସି ଢଗ ପକାଇଲା

"ହଡା ବୁଢ଼ା ଗଲେ ଛାଡ଼ି
ଏକା ରହିଲେ କୁଣ୍ଡିବାଡ଼ି।"

ଆଈର କଥା ଶୁଣି ଆମ ପେଟ ଦରଜ। ଆଈ ଏପରି ମଜ୍ଜାଳିଆ ଲୋକ ତା କଥା ଯିଏ ଶୁଣିବ ନ ହସି ରହିପାରିବ ନାହିଁ। ଯେ କୌଣସି ଲୋକ ମୁଗ୍ଧ ହୋଇଯିବ।

ମୋ ଆଈ ଗଲାଣି ସେପୁରକୁ। ଏକା ଗଙ୍ଗ ଆଈ ଥିଲା ଗାଁରେ। ଯେଉଁମାନେ ସ୍ନେହଶ୍ରଦ୍ଧାରେ ବାନ୍ଧି ରଖିଥିଲେ, ସେମାନେ ଗଲାପରେ ଇଚ୍ଛା ହୁଏ ନାହିଁ ପାଦପକାଇବାକୁ। କେବଳ ମୋ ଗଙ୍ଗ ଆଈର ଯେଉଁ ଶ୍ରଦ୍ଧା ଆମକୁ ବାନ୍ଧିରଖିଥିଲା ଯେପରି ଚୁମ୍ବକ ଲୁହାକୁ ଟାଣେ। ଆମେ ସେଥିପାଇଁ ମଝିରେ ମଝିରେ ଗାଁକୁ ଯିବାକୁ ବ୍ୟାକୁଳ ହୋଇଉଠୁ କିନ୍ତୁ ସେ ପାରିକି ସେ ଗଲା। ପ୍ରଭୁ ତା'ର ଆତ୍ମାକୁ ଶାନ୍ତିରେ ରଖନ୍ତୁ।

"ଜୟ ଜଗନ୍ନାଥ"

ମୁଦ୍ରଣ : ଅଲଟ୍ରା ଇମ୍ପ୍ରେସନ୍, ସୂତାହାଟ, କଟକ

